ବଳରାମ ଦାସଙ୍କ ରଚିତ

# ଲକ୍ଷ୍ମୀପୁରାଣ ।



ଡାକ୍ତର ଶ୍ରୀ ଅମୃତଲାଲ ସରକାରଙ୍କ ଦ୍ୱାରା
* ମ ବାର ପ୍ରକାଶିତ ।

*Calcutta:*

PRINTED AND PUBLISHED BY P. SIRCAR AT THE ANGLO-SANSKRIT PRESS, 51, SANKARITOLA,

1912.

ମୂଲ୍ୟ ଏକଅଣା ମାତ୍ର ।



# ଲକ୍ଷ୍ମୀପୁରାଣ ।

---

ପ୍ରଥମେ ବନ୍ଦଇଁ ଦେବ ବ୍ରହ୍ମାଣ୍ଡଈଶ୍ୱର । ମୀନରୂପେ ଅନ୍ଦୋଳଇ ଜଳଧି ଭିତର । ୧ । ଲକ୍ଷଯୋଜନ ଗଭୀର ଅଟେ ରତ୍ନାକର । ତହିଁ ନାଥ ପଶି କାହିଁ ନ ଲଭିଲ ଚୋର । ୨ । ଉଦରକୋଣେ ମାତ ଯେଉଁ ଗଙ୍ଗା ବହୁଥିଲ । ସେ ଗଙ୍ଗା ଦଳିଲ ନଗକୋଣେ ଲୀନ ହେଲ । ୩ । ଦେକ୍ଷିଣ ବରୁଣଗୃହା ମହାଉଷ୍ଣ କଲ । ଯେଣୁ ଭୂମି ଫୁଟି ପାଣି ବ୍ରହ୍ମାଣ୍ଡେ ଲଗିଲେ । ୪ । ଭୂମିର ମହିମା ପ୍ରଭୁ ଅପରୁ ଅପାର । କଥା ରଚାଇଛ ନାଥ ମର୍ତ୍ତ୍ୟମଣ୍ଡଳର । ୫ । ବନ୍ଦଇ କମଳା ଲକ୍ଷ୍ମୀଦେବୀ କମଳନୀ । ଦାରିଦ୍ର୍ୟନାଶିନ୍ନ ମା ଗୋ ନୃସିଂହଙ୍କ ଘରଣି । ୬ । ପ୍ରଥମରେ ନାମ ତୋର ଲକ୍ଷ୍ମୀ ବୋଲି ଜାଣି ॥ ଦ୍ୱିତୀୟରେ ନାମ ତୋର ବରୁଣରୁକ୍ମିଣୀ । ୭ । ତୃତୀୟ ନାମଟି ତୋର ଅଟଇ ପିଙ୍ଗଳା । ଚତୁର୍ଥରେ ନାମ ଶ୍ୟାମ ହୋଇଛି ଚଞ୍ଚଳା । ୮ । ପଞ୍ଚମରେ ନାମ ତୋର ଅଟେ କମଳିନୀ । ଷଷ୍ଠ ନାମ ଗୋଟି ମା ଗୋ ସିନ୍ଧୁର ନନ୍ଦନୀ । ୯ । ସପ୍ତମ ନାମଟି ତୋର

ବିଷ୍ଣୁର ମୋହିନୀ । ଅଷ୍ଟମରେ ନାମ ଅଟେ ପାପବିନାଶିନୀ । ୧୦ । ନବମରେ ନାମ ଧରିଅଛୁ ବରଦେହୀ । ପଦ୍ମାଳୟା ନାମ ତୋର ଦଶମେ ଅଛଇ । ୧୧ । ଏକାଦଶ ନାମ ତୋହ୍ର ଅଛଇ କମଳା । ଦ୍ୱାଦଶରେ ନାମ ତୋର ହୋଇଛି ହିପୁର୍ର । ୧୨ । ସତ୍ୟଯୁଗେ ନାମ ତୋର ଅଟେ ହରିପ୍ରିୟା । ତ୍ରେତାଯୁଗେ ନାମ ମା ଗୋ ଥିଲ ସୀତୟା । ୧୩ । ଦ୍ୱାପର ଯୁଗରେ ନାମ ଅଛଇ ରୁକ୍ମିଣୀ । କଳିଯୁଗେ ନାମ ତୋର ତ୍ରୈଲୋକ୍ୟପାଳିନୀ ॥ ଅନନ୍ତମନେ ଯେ ଏହା ପଢ଼ଇ ଶୁଣଇ । ସଂସାରୁ ମୁକ୍ତ ହୋଇ ବିଷ୍ଣୁଲୋକେ ଯାଇ ॥ ବାରମାସ ମଧ୍ୟେ ସାର ମାର୍ଗଶିର ମାସ । ଲକ୍ଷ୍ମୀଠାକୁରାଣୀଙ୍କର ସନ୍ତୋଷରେ ବାସ । ୧୪ । ମାର୍ଗଶିରେ ପଡ଼ଇ ଯେତେକ ଗୁରୁବାର । ପ୍ରତି ଗୁରୁବାରେ ଲକ୍ଷ୍ମୀ ମନ୍ଦିରୁ ବାହାର । ୧୫ । ଅତି ଯତନରେ ସଜ ହୋଇ ଜଗନ୍ମାତା । ବାହାରନ୍ତି ହୁଦେ ବହୁ ଜଗତର ଚାନ୍ଦ୍ରା ॥ ମନୋହର ଶୁକ୍ଳବସ୍ତ୍ର ପିନ୍ଧିଲେକ ଝାଟି । କଣ୍ଠରେ ଖଞ୍ଜିଲେ ପଦକ ରତ୍ନ ହଳିଣି । ୧୬ । ଅଣ୍ଟା ଆଉ ବାହୁରେ ଖଞ୍ଜିଲେ ମୁନାମୁଣ୍ଡା ॥ ହୃଦୟରେ ଶୋଭି ଦଶେ ସତର ମୁକୁତା । ୧୭ । ବାଜେଣି ନୂପୁର ମାଳା ପେନ୍ଧିଲେ ପାଦରେ । ସୁବର୍ଣ୍ଣରତ୍ନଚୁଡ଼ୀ ମାଏ ପେନ୍ଧିଲେ ହସ୍ତରେ । ୧୮ । କର୍ଣ୍ଣରେ ସୁବର୍ଣ୍ଣଚାପ ହୃଦେ ରତ୍ନହାର । ମାଣିକ୍ୟ ମୁକୁତାହାର ଲମ୍ବିଛି ସୁନ୍ଦର । ସୁବର୍ଣ୍ଣ ନିର୍ମିତ ତାଡ଼ ପେନ୍ଧିଲେ ଭୁଜରେ । ଅବର ଯେ ମୁଦ୍ରିକା ଖଞ୍ଜିଲେ ଅଙ୍ଗୁଳିରେ ॥ କେତେ କେତେ ଆଭରଣ ଗଣନା ନ ଯାଇ । କେ କହି ପାରିବ ଯେ ମାନବଦେହ ବହି ॥ କଳାମୁକ୍ତା ଗୋଟିଏକ ନାସାରେ ଖଞ୍ଜିଲେ । ଶ୍ୱେତଛତ୍ର ପୃଷ୍ଠରେ ଯାଇଣ ପ୍ରବେଶିଲେ ॥ ଘରେ ଘରେ ଦ୍ୱାରେ ଦ୍ୱାରେ ଦେଖନ୍ତି ବୁଲି । କାହାଦ୍ୱାର ଗୋବରରେ ଲିପା ହୋଇନାହିଁ । ପଦ୍ମାବତୀ ବୋଲି ଏକ ବ୍ରାହ୍ମଣୀର ନାମ । ତାହାର ଅନ୍ୟାୟ କର୍ମ ଅତି ଅନୁପମ ॥ ଗୁରୁବାର ଦିନ ବସି ଶିକୁହିଲ ଶଇ । ସକୀ ସଙ୍ଗାତୁଣୀ ପିଣ୍ଡ ଝଙ୍କରେ ବସାଇ । ୧୯ । ଦେଖି କୋପ କଲେ ଯେ ପରମଲକ୍ଷ୍ମ

ଛନ୍ତି । ଧିକ୍କାର କରଣ ତାକୁ କହନ୍ତେ ଗୁଣ୍ଠାଇ । ୨୯ । ମୋହର
ବଚନେ ଯେବେ କରିବୁ ତୁ ହେଳା । ସକଳ ସମ୍ପଦ ନାଶି ଯିବା-
ଇବ ବେଳା । ୩୦ । ଗୁରୁବାର ଦିନ ଯେଉଁ କଥା ନିବାରଣ ।
ସେ କଥା କହୁଛୁ ଏବେ ସାବଧାନେ ଶୁଣ ।୩୧। ଗୁରୁବାରେ ଯେଉଁ
ନାରୀ ଗାଡୁଆ ଏ ଶଇ । ପ୍ରାଣେ ନ ମାରିଣ ଯେ କୁଳବଂ ଦେଇ
ଦେଇ ।୩୨। ଗୁରୁବାରେ ଯେଉଁ ନାରୀ ଭୁଞ୍ଜଇ ଅମିଷ । ପ୍ରାଣେ ନ
ମାରିଣ ଯେ କୁଳବଂ ଦେଶ ଦେଶ ।୩୩। ଗୁରୁବାରେ ଯେଉଁ ନାରୀ
ନ ପଖାଳେ କେଶ । ତାହାର ଘରରେ ଲକ୍ଷ୍ମୀ ନ କରନ୍ତି ବାସ ।
ଗୁରୁବାରେ ଯେଉଁ ନାରୀ ପିନ୍ଧେ ଖୁଙ୍କୁଲୁଗା । ଐଶ୍ୱର୍ଯ୍ୟ ସମ୍ପଦ
ପାଏ ହୁଅଇ ମୁରୁଛା ।୩୪। ଗୁରୁବାରେ ଯେଉଁ ନାରୀ ଶଯ୍ୟାକରେ
ବସି । ଜନ୍ମେ ଜନ୍ମେ ତାକୁ ନ ମିଳଇ ସୁଖରାଶି ॥ ସକାଳୁ ନ ଦିଏ
ଦ୍ୱାରେ ଯେ ଗୋବର ଜଳ । ଯେତେ ପୁଣ୍ୟ କରିଥିଲେ ସବୁ ତା
ନିଷ୍ଫଳ ।୩୫। ସନ୍ଧ୍ୟା ଉପେକ୍ଷିଣ ଯେ ଦିଅଇ ସନ୍ଧ୍ୟାବତୀ । ଧନପୁଷ୍ଟ
ହାନି ହୁଏ ସଦା ବସ୍ତୁ କ୍ଷତି ।୩୬। ଗୁରୁବାରେ ଯେଉଁ ନାରୀ ଚୁଲା
ଭିଣୁଥାଇ । ଚୁଲା ପ୍ରାପ୍ତେ କରି ତାକୁ ଉଡ଼ାଇ ଦିଅଇ ।୩୭। ଗୁରୁ
ବାରେ ଯେଉଁ ନାରୀ ନ ବାନ୍ଧେ ପାଉଁଶ । ତାହାର ବଂଶରୁ ମୁହିଁ
କରଇ ବିନାଶ ।୩୮। ଯେଉଁ ନାରୀ ହାଣ୍ଡିଧୋଇ ନ ଛଡ଼ାଏ
କଳା । ସବୁ ହଇଶିଗ୍ରୀମାନ ତାହାପରେ ମେଲା ।୩୯। ଗୁରୁବାରେ
ଯେଉଁନାରୀ ଅପତ୍ୟଙ୍କୁ ମାରେ । ଅନ୍ନ ବସ୍ତ୍ର ନ ମିଳଇ ବୁଲେ
ଦ୍ୱାରେ ଦ୍ୱାରେ ।୪୦। ଗୁରୁବାର ଅମାବାସ୍ୟା ସଙ୍କ୍ରାନ୍ତିଦିନ । ଗୃହ
କାଳେ ଯେଉଁ ନାରୀ କରଇ ଭୋଜନ ।୪୧। ଏ ଭଲଦିନରେ ଯେହୁ
ଉତ୍ତ୍ରୁଙ୍ଗ ଖାନ୍ତି । ଅନ୍ତଃକାଳେ ଯମଦ୍ୱାରେ ନାନାଦଣ୍ଡ ପାନ୍ତି ।୪୨।
ଏ ଭଲଦିନରେ ଯେହୁ ଶୃଙ୍ଗାର କରଇ । ତାର ଜନ୍ମ ଲକ୍ଷ୍ମୀ
ବେଗେ ତ୍ୟାଗ କରିଯାଇ ।୪୩। ଗୁରୁବାରେ ଯେଉଁ ନାରୀ ଯୋଡ଼ା
ଦ୍ରବ୍ୟ ଖାଇ । ଦାରିଦ୍ର୍ୟ ଅବସ୍ଥା ପାଇ ବୁଲେ ଦେଇ ଦେଇ ॥
ଗୁରୁବାରେ ଶୁକ୍ଳଦଶମୀ ବଳ ସୁଦଶା । ମାର୍ଗଶିର ମାସେ ଧାନ-

ମାଟିବସ୍ତ୍ରାଓଁଷା । ୪୭ । ମୋହର ବ୍ରତକୁ ହେଳା କରେ ଯେଉଁ
ନାରୀକୁ । ଦରିଦ୍ର ଅବସ୍ଥା ତାର କେବା ପାରେ ହରି । ୪୮ । ଗୁରୁ
ବାରେ ଯେଉଁ ନାରୀ ଘୃତଇ ଉଚ୍ଛିଷ୍ଟ । ପ୍ରାଣେ ନ ମାରଣ ତାକୁ
ଦିଏଁ ଅନ୍ନକଷ୍ଟ । ୪୯ । ଗୁରୁବାର ଅମାବାସ୍ୟା ସଙ୍କ୍ରମଣ ଦିନ । ଏ
ତିନିଦିନରେ ଯେହୁକରେ ଦାନପୁଣ୍ୟ । ୫୦ । ନୂଆପାକ ସର୍ଦ୍ଧା
ଦିଣ ଯେ କରେ ରନ୍ଧନ । ଭକ୍ତିଭାବେ ବ୍ରାହ୍ମଣକୁ ଦିଅଇ ଭୋ
ଜନ । ୫୧ । ଐଶ୍ୱର୍ଯ୍ୟ ସମ୍ପଦ ଭୋଗ ତାହାକୁ ଦିଅଇ । ତାହାର
କକ୍ଷରେ ମୁହିଁ ସର୍ବଦା ବସଇଁ । ୫୨ । ଗୁରୁବାରେ ଯେଉଁ ନାରୀ
ମୋତେ ପୂଜା କରେ । ଲକ୍ଷ୍ମୀ ନାରାୟଣ ନମୋ ଭାବେ ହୃଦୟରେ
। ୫୩ । ନିଜ ସ୍ୱାମୀ ପାଦପଦ୍ମେ ପ୍ରୀତି ଭକ୍ତି କରେ । ଅନ୍ତଃକାଳେ
ଯାଏ ସେହୁ କୃଷ୍ଣଙ୍କ ମନ୍ଦିରେ । ୫୪ । ଗୁରୁବାରେ ଯେଉଁ ନାରୀ
ପେଣିଁ ଅସୁଁଣା । ତାହାକୁ ସନ୍ତୋଷ ମୁଁ ଯେ ହୁଅଇ କମଳା ॥
ସିନ୍ଦୂର କଜ୍ଜ୍ୱଳ ଯେହୁ ହଳଦୀ ଲଗାଇ । ତାଠାରେ ସନ୍ତୋଷ
ଅତି ପ୍ରସନ୍ନ ହୁଅଇଁ । ୫୬ । ସେ ମୋହର ସେବକଙ୍କ ଲୋ ଅଟଇ
ସଂସାରେ । କୋଟି ଲକ୍ଷ୍ମୀ ତାହାକୁ ମୁଁ ଦିଏଁ ସବୁକାଳେ । ୫୭ ।
ପ୍ରାତଃକାଳୁ ଯେଉଁ ନାରୀ ନିତ୍ୟେ କରେ ସ୍ନାନ । ସର୍ବଦା ମୁଁ ରହି-
ଥାଏ ତାହାର ଭବନ । ୫୮ । ଅଶୁଚି ହୋଇଣ ଯେହୁ ଛୁଏଁ ମୋ
ଆସନ । କୋପ କରି ତାର ଘରୁ ଯାଏଁ ବାହାରିଣ । ୫୯ ।
ଯେଉଁ ନାରୀ ମୋତେ ପଢ଼ି କରୁଥାନ୍ତି ହିଂସା । ନିଜ ସ୍ୱାମୀ
ଛାଡିଣ ଯେ ପରେ କରେ ଆଶା । ୬୦ । ଅତିଥିକୁ ନ ଦେଇ ଯେ
ଭୋଜନ କରଇ । ଏମନ୍ତେ ପାପିନୀ ମୁଖ ମୁହିଁ ନ ଦେଖଇ । ୬୧ ।
ଲୋଭରେ ଅମିଷ ଦେଇ ଯେ କରଇ ଗ୍ରାସ । ଅଭକ୍ଷ ଭକ୍ଷଇ
ଯେଣୁ ନ ରହେ ତା ପାଶ । ୬୨ । ଉଠିଲକୁ ମୁଖ କରି ଯେ
କରେ ଭୋଜନ । ଉତ୍ତରକୁ ମୁଣ୍ଡକରି ଯେ କରେ ଶୟନ । ୬୩ ।
ପୂର୍ବମେ ମସ୍ତକ କରି ଯେ କରେ ଶୟନ । ପଶ୍ଚିମେ ଦକ୍ଷିଣେ
ମୁଖେ ଦୀପ ବସାଇଣ । ୬୪ । ପ୍ରଦୀପ ଛାୟାରେ ବସି ଯେ କରେ

ଭୋଜନ । ଉଚ୍ଛିଷ୍ଟ ହସ୍ତରେ ଦୀପ ଛୁଏ ଯେଉଁ ଜନ । ୬୫ ।
ଗଛର ଛାମୁରେ ଯେବେ କରଇ ଶୟନ । ସନ୍ଧିକାଳେ ଦଧିଅନ୍ନ
ଯେ କରେ ଭୋଜନ । ୬୬ । ଯେଉଁ ନାରୀ ମନ ଦିଏ ଜାର-
ପୁରୁଷରେ । ପତି ପାଦେ ଭକ୍ତିଭାବ ନ କରେ ଶ୍ରଦ୍ଧାରେ । ୬୭ ।
ଯେଉଁ ଲୋକ କ୍ଷୌର ହୁଏ ନାପିତର ଦ୍ୱାରେ । ଭୋଜନ ସମୟେ
ଅନ୍ନ ପକାଏ ଭୂମିରେ । ୬୮ । ଭୁଞ୍ଜି ନ ପାରିଣ ଅନ୍ନ ପକାଇ
ଯେ ଦିଅନ୍ତି । ଏହି କର୍ମ କଲେ ଅଉ ମୋତେ ସେ ନ ପାନ୍ତି । ୬୯ ।
କନ୍ୟା ଭୁଇ ମାସେ ପିତୃଶ୍ରାଦ୍ଧ ନ କରନ୍ତି । କଥା କହୁଁ କହୁଁ
ସନ୍ଧ୍ୟାବେଳେ ଯେ ହସନ୍ତି । ୭୦ । ଶୁକ୍ରବାରେ ବୁଧବାରେ ଯେ
ଦିଅନ୍ତି ଧାନ୍ୟ । ଏହି ଦୁଇବାରେ ଯେହୁ ଦକଇ ସୁବର୍ଣ୍ଣ । ୭ ।
ଉଲଙ୍ଗ ହୋଇ ଶୟନ କରଇ ଯେ ପ୍ରାଣୀ । ଶାଶୁ ଶ୍ୱଶୁରଙ୍କୁ ନ
ମାନଇ ଯେ ରମଣୀ । ୭୨ । ଅମାବାସ୍ୟା ସଂକ୍ରାନ୍ତିରେ ଯେ ବୁଲାଏ
ହଳ । ଏହି ଦିନମାନଙ୍କରେ ସେନଙ୍ଗି ଯେ ଖେଳି । ୭୩ । ପାଦର
ଉପରେ ପାଦ ଯେ ଦେଇ ବସଇ । ସଭାରେ କଥିଣ ଯେ ମାନବ
ମିଥ୍ୟା କହଇ । ୭୪ । ଅଲକ୍ଷ୍ମୀ ଭାବରେ ଯେହୁ ପାଦ ନ ଧୁଅଇ ।
ଅଶୁଚିବସ୍ତ୍ର ପିନ୍ଧିଣ ଭୋଜନ କରଇ । ୭୫ । ବ୍ରାହ୍ମଣ ଦେବତା
ଅଗ୍ନି ମଧ୍ୟେ ଗଳିଯାଇ । ମାନ୍ୟଲୋକ ଦେଖିଲେ ଯେ ମାନ୍ୟ ନ-
କରଇ । ୭୬ । ଯେଉଁ ନାରୀ ଗୁରୁଜନକୁ ସେବା ନ କରଇ ।
କ୍ରୋଧରେ ସ୍ୱାମୀକୁ ଦୁର୍ଣ୍ଣା ବାକ୍ୟ କହଇ । ୭୭ । ଭିକ୍ଷୁକକୁ ଯେଉଁ
ନାରୀ ଭିକ୍ଷା ନ ଦିଅଇ । ଥାଇଁ ଥାଇଁ ନାହିଁ କରି ଫେରାଇ
ଦିଅଇ । ୭୮ । କୁଷ୍ମାଣ୍ଡଫଳକୁ ଯେଉଁ ରମଣୀ କାଟଇ । ପରଦ୍ରବ୍ୟ
ଯେଉଁ ନାରୀ ଚୋରି କରି ନେଇ । ୭୯ । ଏ ଲୋକମାନଙ୍କର
ଘରେ ମୁଁ ନ ଥାଇ । ଜନ୍ମେ ଜନ୍ମେ ଏମାନଙ୍କୁ ଅନ୍ନ ନ ମିଳଇ ॥
ଋତୁମତୀ ନାରୀକି ଯେ ଗମନ କରଇ । ଅଳ୍ପବୁଦ୍ଧି ନାଶ ହୁଏ
ଅନ୍ନ ନ ମିଳଇ । ୮୦ । ଯେବଣ ବ୍ରାହ୍ମଣମାନେ ସନ୍ଧ୍ୟା ନ କରନ୍ତି ।
ପାଦ ନ ଧୋଇଣ ଦେବତାଙ୍କୁ ଯେ ପୂଜନ୍ତି । ୮୧ । ପାଦ ନ

ଧୋଇଣ ପାକଶାଳକୁ ଯେ ଯାଏ । ସଂକ୍ରମଣ ଗୁରୁବାରେ ଧାନ ଯେ ସିଝାଏ । ୮୩ । ଗୁରୁବାରେ ଯେଉଁ ନାରୀ ନଖକୁ କାଟନ୍ତି । ଗୁରୁବାରଦିନ ଯେତୁ ସ୍ନାନ ନ କରନ୍ତି । ୮୪ । ମଳିନ ବସନ ଯେତୁ କରେ ପରିଧାନ । ସୁବର୍ଣ୍ଣ ହଜାଇ ଯେତୁ ନ ଦିଅଇ ଦାନ । ୮୫ । ଅଶ୍ୱତ୍ଥ ତୁଳସୀବୃକ୍ଷେ ଜଳ ନ ଦିଅନ୍ତି । ବସ୍ତ୍ର ଦିଲମ୍ବ ଯାଏ ଭୁଞ୍ଜି ବସିଥାନ୍ତି । ୮୬ । ଏହି ଲୋକେ ପ୍ରତିଜନ୍ମେ ଅନ୍ନକଷ୍ଟ ପାନ୍ତି । ଅନ୍ନ ବସ୍ତ୍ର ନ ମିଳଇ ଦରିଦ୍ର ହୁଅନ୍ତି । ୮୭ । ଗୁରୁବାର ଦଶମୀ ତିଥି ବ୍ରତ ସୁଦଶା । ଚଣ୍ଡାଳୁଁ ବ୍ରାହ୍ମଣଯାଏ ଲକ୍ଷ୍ମୀଙ୍କର ଓଷା । ୮୮ । ଗୁରୁବାରେ ନ ଯିବନ୍ତି ସ୍ୱାମିଙ୍କର ପାଶ । ଏହା ପ୍ରତିପାଳିଲେ ବୈକୁଣ୍ଠେ ହେବ ବାସ । ୮୯ । ଏହିରୂପେ ବ୍ରାହ୍ମଣୀକି ଉପଦେଶ ଦେଲେ । ବାହୁଡ଼ି ପରମ ଲକ୍ଷ୍ମୀ ଦେଉଳକୁ ଗଲେ । ୯୦ । ମେଷ ମାସ ଶୁକ୍ଳଦଶମୀ ଗୁରୁବାର । ଲକ୍ଷ୍ମୀନାରାୟଣ ବ୍ରତ ପଡ଼େ ସେ ଦିନର । ୯୧ । ପ୍ରଭାତରେ ଶଯ୍ୟା ଥାଉଁ ଲକ୍ଷ୍ମୀ ଦେବୀ ଉଠି । ଜଗନ୍ନ ପାଦପଦ୍ମରେ କରିଲେକ ସ୍ତୁତି । ୯୨ । ଆଜ୍ଞା ଦେଲେ ପ୍ରଭୁ ମୁଁ ନଗର ବୁଲି ଯିବି । ନଗର ଅବ୍ରମାନ ଦେଖିଣ ଆସିବି । ୯୩ । ଗୋବିନ୍ଦ ବୋଇଲେ ଲକ୍ଷ୍ମୀ ବେଗ ହୋଇ ଯିବ । ବଡ଼ସିଳ ନ ଦେଖଣ୍ଟୁ ବାହୁଡ଼ି ଆସିବ । ୯୪ । ଶ୍ରୀମୁଖରେ ଆଜ୍ଞା ଦେଲେ ପ୍ରଭୁ ଚକ୍ରପାଣି । ନଗର ଦେଖନ୍ତୁ କରି ଗଲେ କମଳିନୀ । ୯୫ । ଷାଠିଏ ହଜାର ଘର ଦ୍ୱାରକାନଗରେ । ସବୁ ଘର ବୁଲିଣ ଅଇଲେ ଶେଷଘରେ । ୯୬ । ସବୁଦ୍ୱାରେ ଲକ୍ଷ୍ମୀଦେବୀ ବୁଲିଣ ଯେ ଗଲେ । କାହାର ଘରରେ ବ୍ରତବିଧି ନ ଦେଖିଲେ । କେବଣ ଯୁବତୀ ଯେ ନିଦ୍ରାରୁ ଉଠିନାହିଁ । ଅଗଣା ପିଣ୍ଡିର ଦ୍ୱାରେ ଛେରା ଦେଇ ନାହିଁ । ଚାରି ପାଞ୍ଚ ନାରୀ ମିଳି ଏକବୁଣ୍ଡ ହୋଇ । କେ ବୋଲଇ ସଙ୍ଗାତ ଗୋ କେ ବୋଲଇ ସହି । ୯୭ । ସୁଦଶାବ୍ରତକୁ କିସ ଫଳ ଯେ ହୁଅଇ । ଧାନ ମାଣକରେ କିସ ହୋଇବ ଗୋ ସହି ॥ ଶୁଣିଣ ପରମଲକ୍ଷ୍ମୀ ନ ପାଇଲେ ସହି । ବୋଇଲେ ମୋହର ବ୍ରତ ନ

ମାଇଲେ ବେତ୍ର ।୧୦୧। ସମୁଖ ହୋଇଣ ଲକ୍ଷ୍ମୀ କହୁ କୋପ
କଲେ । ଅଭିଶାପ ଦେଇ ଛନ୍ତି ବାହୁଡି ଅଇଲେ ।୧୦୨।
ଦେଖିଲେ ଗ୍ରାମ ବାହାରେ ଅନ୍ତ୍ୟଜ ଗୃହରେ । ଶ୍ରୀଆ ନାମେ ଚଣ୍ଡା
ଳୁଣୀ ଅଛଇ ସେଠାରେ ।୧୦୩। ପ୍ରଭାତ ପହରଇ ଗୁଣ୍ଡିଚ୍
ନଅର । ଲକ୍ଷ୍ମୀନାରାୟଣ ପାଦେ ଥାଏ ମନ ତାର ।୧୦୪। ଶୁଣିଲା
ହୋଇଛି ଅଜ ଲକ୍ଷ୍ମୀଗୁରୁବାର । ପୂଜା ବିଧାନରେ ସେହି ହେଲା
ତତପର ।୧୦୫। ଗୃହସଣ୍ଡବେଳ ଥାଇ ଶଯ୍ୟାରୁ ଉଠିଲା । ଏକ-
କଣ୍ଡୀ ଗାଈର ଯେ ଗୋମୟ ଅଣିଲା ।୧୦୬। ଗୃହ ଦ୍ୱାରେ
ଚଉକ୍ରୁ ଲିପିଣ ଯେ ଦେଲା । ତିଅଗ୍ରଲ ବାଟିଣ ଝୋଟି ପକା-
ଇଲା ।୧୦୭। ଝୋଟିର ଉପରେ ପଦ୍ମ ଗୋଟିଏ ଲେଖିଲା ।
ପଦ୍ମଉପରେ ମାଣକୀ ଲଗାଏ ସ୍ଥାପିଲା ।୧୦୮। ତହିଁପରେ ଲେଖିଲାକ
କୁସୁମ ଥୋକାଏ । ଲକ୍ଷ୍ମୀପାଦ ଲେଖି ଅଛି ଦାଣ୍ଡଦ୍ୱାର ଯାଏ ।
ମୃଗଛ ଅର୍ପିଲା ସେହି ଚଣ୍ଡାଳୁଣୀ ଭଲ । ନଦୀରେ ପ୍ରବେଶ
ହୋଇ ସ୍ନାନାଦ ସାରିଲା ।୧୧୦। କଲଶ ଗୋଟିଏ ଆଣି ଦୂଅରେ
ସ୍ଥାପିଲା । ପଞ୍ଚବର୍ଣ୍ଣ ସୂତ୍ର ଆଣି ତହିଁପରେ ଦେଲା ।୧୧୧। ଗନ୍ଧ
ଚନ୍ଦନ ଯେ ଧୂପ ଦୀପ ସମର୍ପିଲା । ଦଧିଦଧ ନୈବେଦ୍ୟ ଆଣିଣ
ପୂଜାକଲା ।୧୧୨। ଦୁବା ଦଣ୍ଡଗୋଟି ଯେ ଉଞ୍ଜଳ ଦଣ୍ଡଗୋଟି ।
ଧିରେ ସେହି ଚଣ୍ଡାଳୁଣୀ ପାଦପଦ୍ମେ ଲୋଟି ।୧୧୩। ମୁଁ ଛାର
ଚଣ୍ଡାଳନାରୀ କିଛି ନ ଜାଣଇ । କ୍ଷମିଲ ଉବତ ମୋର ସେନ ମା
ଗୋସାଇଁ ।୧୧୪। ପଦ୍ମସ୍ଥାନମାଲେ ଅଭ ପଦ୍ମଫୁଲେ ବାଇ ।
ପଦ୍ମ ଦେଖି ବହୁ ଶଙ୍କା କଲେ ମହାମଣ୍ଡୀ ।୧୧୫। ବୋଇଲେ
ଲୋ ଚଣ୍ଡାଲୁଣୀ ମାଗ ତୁହିବର । ପ୍ରସନ୍ନ ହୋଇଲି ଦୁଃଖ ନାଶିବ
ତୋହର ।୧୧୬। ଚଣ୍ଡାଲୁଣୀ କହୁଅଛି ଶିରେ କର ଦେଇ ।
ତ୍ରୁ କର ମାଟିକି ମାଇଃ ଯାଚ ଦିଅ ତୁହି ।୧୧୭। ଗୋ ଗୋଷ୍ଠରେ
ଦିଅ ମୋତେ ଲକ୍ଷେପଦ୍ମ ବାଇ । କୁବେର ସମାନେ ଧନ ଦିଅ
ମାଇଃ ତୁହି ।୧୧୮। ବୋଇଲୁ ନନ୍ଦନ ଯେ ହସ୍ତରୁ ମୁଜାବାହି ।

ଚାରିଯୁଗେ ବସିବ ଅମର ପଦ ପାଇ । ୧୧୯ । ଲକ୍ଷ୍ମୀ ଶୁଣି ବୋଇଲେ ତୁ ହୋଇଲୁ ଛ ବାଇ । ଦ୍ୱାରକା ସମ୍ପଦ ସବୁ ନେଲୁ ତୁ ଛଡ଼ାଇ । ୧୨୦ । ଏ ସମସ୍ତ ଦର ଭୋଳେ ଦେଇଣ ପାରଇ । ଅମରବର ଦେବାକୁ ଶକ୍ତି ମୋର ନାହିଁ । ୧୨୧ । ପ୍ରାଣ ଥିବାଯାଏ ତୁ ଐଶ୍ୱର୍ଯ୍ୟ ଭୁଞ୍ଜୁଥିବୁ । ଅନ୍ତଃକାଳେ ଅମର ବୈକୁଣ୍ଠରେ ବସିବୁ । ୧୨୨ । ମୋହର ଏ ବ୍ରତ କରୁଥିବୁ ସବୁଦିନ । ଲକ୍ଷ୍ମୀ ନାରାୟଣ ପାଦେ ଥିବ ତୋର ମନ । ୧୨୩ । ବର ଦେଇ ସାରିଣ ଯେ ଦାରିଦ୍ର୍ୟନାଶିନୀ । ବହେ କରି ଯାଉଛନ୍ତି ଦେବୀ କମଳିନୀ । ହରି ବଳରାମ ଯେ ମୃଗୟା ଯାଇଥିଲେ । ଯୋଗବଳେ ବଳରାମ ଏ କଥା ଜାଣିଲେ । ୧୨୪ । ଦେଖ ଦେଖ କହ୍ନାଇ ତୋ ନାରି ଯାର ଗୁଣ । ନଗରରେ ନାହାନ୍ତି କ କ୍ଷତ୍ରିୟ ବ୍ରାହ୍ମଣ । ୧୨୫ । ହାଡ଼ିଘରେ ଥିବ ଲକ୍ଷ୍ମୀ ପାଣଘରେ ଥିବ । ସ୍ନାନ ନ କରିଣ କନ୍ଧ-ଦେଉଳେ ପଶିବ । ୧୨୬ । ଏହିରୂପେ ସବୁଦିନେ ଦେଉଳେ ଅଛୁ । ଆମ୍ଭ ଦୁଇଜଣଙ୍କୁ ରେ ବିଟାଳ କରୁଛୁ । ୧୨୭ । ଦାରିଦ୍ର୍ୟଭଞ୍ଜିନୀ ନାମ ଯେଣୁ ଅଛି ବହି । ଦରିଦ୍ରମାନଙ୍କ କଷ୍ଟ ନ ଥାଇ ସହି । ୧୨୮ । ସୁଦଶା ନାମରେ ଏକ ବ୍ରତ ଯେ ତାହାର । ଏହି ବ୍ରତେ ଚଣ୍ଡାଳୁଣୀ ପୂଜଇ ପଦ୍ମର । ୧୨୯ । ଛିଯ୍ୟାଠାରେ ଯେବେ ସ୍ନେହ ଅଛି ରେ କହ୍ନାଇ । ଚଣ୍ଡାଳସାହିରେ ଘର ତୋଳ ବେଗେ ଯାଇ । ୧୩୦ ଆମ୍ଭ ବାକ୍ୟ ମାନି ଭାଇ ଦଅ ଘଉଡ଼ାଇ । ଏପରି ଘରଣୀ ଥିଲେ ଭଲ ଗତି ନାହିଁ । ୧୩୧ । କୋଦଣ୍ଡ ବୋଇଲେ ଭାଇ ଘଉଡ଼ାଇ ଦେବା । ଘରର ଘରଣୀ ଗଲେ ସୁଖ ନ ପାଇବା । ୧୩୨ । ବଳରାମ ବୋଇଲେ ସ୍ତ୍ରୀଠାରେ ଯେବେ କାର୍ଯ୍ୟ । ଚଣ୍ଡାଳ ସାହିରେ ଘର ତୋଳ ଦେବଗୃହ । ୧୩୩ । ମୋହ ବଡ଼ଦେଉଳକୁ ଆଉ ନ ଆସିବୁ । ମାଇପକୁ ଘେନି ଗ୍ରାମ ବାହାରେ ରହିବୁ । ୧୩୪ । ଜଗନ୍ନାଥ ବୋଇଲେ ହେ ବଳରାମ ଭାଇ । ଲକ୍ଷ୍ମୀ ତୁଲ୍ୟ ଭାର୍ଯ୍ୟା ଆଉ ମିଳି ନ ପାରଇ । ୧୩୫ । ପୁଣ୍ୟ

କରିଥିଲେ ଯାଇଁ ଏମନ୍ତେ ଭାରିଯା । ଭାରିଯାକୁ ଛାଡିଲେ କୁଳକୁ
ବଡ଼ ଲଜ୍ଜା । ୯୭ । ନାରୀ ଅପରାଧ କଲେ କ୍ଷମା କରେ କାନ୍ତ ।
ତିନି ଅପରାଧ କ୍ଷମା କରଇ ସାମନ୍ତ । ୯୮ । ନ ଜାଣି ଯେ
ଦୋଷ କଲେ ସିନ୍ଧୁ ରାଜଜେମା । ତାରେ ମାଝ ଭ୍ରାନ୍ତେ ତାଙ୍କ ଦୋଷ
କର କ୍ଷମା । ୯୯ । ସ୍ୱର୍ଗରୁ ଗନ୍ଧର୍ବ ଦେବଗଣଙ୍କୁ ଆଣିବା । ପାଞ୍ଚ
ଲକ୍ଷ ଟଙ୍କା ଦେଇ ତାଙ୍କ କରାଇବା । ୧୦୦ । ଏହିଥର ଲକ୍ଷ୍ମୀଙ୍କି
ତାହାରେ ମିଶାଇବା । ଆଉ ଥରେ ଦୋଷ କଲେ ପଛଡ଼ାଇ
ଦେବା । ୧୦୧ । ବଳରାମ କହୁଛନ୍ତି ଶୁଣ ରେ କହ୍ନାଇ । ବେଗେ
ମୋ ସଙ୍ଗୁ ଲକ୍ଷ୍ମୀଙ୍କି ଦଣ୍ଡ ବାହୁଡ଼ାଇ ।୧୦୨। ଜଗନ୍ନାଥ ବୋଲୁଛନ୍ତି
ଶୁଣ କୋସ୍ତୁଭାଇ । ଯେଉଁବେଳେ ସମୁଦ୍ରକୁ ମନ୍ଥିଲ ଗୋସାଇଁ ।
ତା ପିତା ବରୁଣ ମୋତେ ବର ବରିଲେକ । କନକବେଦୀ
ଉପରେ ଦଣ୍ଡ କସିଲା । ୧୦୩ । ହାତ ଦେଇ ଭୂମିଠାରେ
ଧରିଣ ପଡ଼ିଲା । ଦଣ୍ଡଦୋଷ ମୋର କ୍ଷମା କରିବ ବୋଇଲା । ୧୦୪
ଦଣ୍ଡଦୋଷକୁ ଡୋଏକ କ୍ଷମା ଯେ ନ କଲେ । ତିନି ଦୋଷରେ
ତାକୁ ପଛଡ଼ାଇ ଦେଲେ । ୧୦୫ । ଲକ୍ଷ୍ମୀ ପରି ଭାରିଯା ମୁଁ
ପାଇବି ବା କାହିଁ । ବଳରାମ ଶୁଣି କହୁଛନ୍ତି ଅରେ ଭାଇ ।
କୋଟି କୋଟି ଧନ କରିପାରୁ ତୁ ପ୍ରଦାନ । ମାଇପ ଛାରକୁ ବାରୁ
କରୁ ଏତେ ମନ । ୧୦୬ । ବଳରାମ କହୁଛନ୍ତି ଶୁଣ ଅରେ ଭାଇ
ଭାଇଟି ଦକ୍ଷିଣକୁ ତ ସଙ୍ଗେ ତୁଲ୍ୟ ହୋଇ ।୧୦୭। ଭାରିଯା ଅଟଇ
ସିନା ପାଦର ପାନ୍ଦୋଇ । ଭାଇ ଥିଲେ କୋଟି ଭାର୍ଯ୍ୟା ମିଳ ଯେ
ପାଇଇ । ୧୦୮ । ଭାର୍ଯ୍ୟାଠାରେ ଲୋଭ ଯେବେ ଅଛୁ ରେ ।
କହ୍ନାଇ । ଚଣ୍ଡାଳ ସାହିରେ ନଥିଲ ତୋଳ ଯାଇଁ । ୧୦୯ ।
ମୋହ ବଡ଼ ଦେଉଳକୁ ଆଉ ନ ଆସିବୁ । ମାଇପକୁ ଘେନି ଗ୍ରାମ
ବାହାରେ ରହିବୁ ।୧୧୦। ଏ କ୍ରୂର ବଚନ ପ୍ରଭୁ ସହି ନ ପାରିଲେ ।
ଛାଡ଼ିଲି ବୋଲିଣ ରଙ୍ଗ ଅଧରେ କହିଲେ । ୧୧୧ । ଯେଉଁବେଳେ
ଲକ୍ଷ୍ମୀଙ୍କି ଛାଡ଼ିଲେ ଗିରିଧର । ଦେଖିଲେ ପରମ ଲକ୍ଷ୍ମୀ ଚଣ୍ଡାଳ-

ବୃଥାର । ୧୫୪ । ସନ୍ତୋଷ ହୋଇଣ ଲକ୍ଷ୍ମୀ ତାହିଁ ବର ଦେଇ । ମୋହର ବାକ୍ୟ ତଥ୍ୟ କରି ପାଳିଥିବୁ ତୁହି । ୧୫୫ । ତୁଷ୍ଟୀର ଗଣ୍ଡିକ ଛାଳ ବଳୁଥିବ ବାସ । ଲକ୍ଷ୍ମି ଦୟା କଲେ ତାକୁ ଚନ୍ଦନ ଉଅସ । ୧୫୬ । ଯେଉଁ ଚଣ୍ଡାଳୁଣୀ ଘରେ ନ ଥିଲାକ ଅନ୍ନ । ଘରକୋଣେ ଦେଲେ ତାକୁ ଗୁଞ୍ଜ ଯେ ସୁବର୍ଣ୍ଣ । ୧୫୭ । ଯେଉଁ ଚଣ୍ଡାଳୁଣୀ ଘରେ ନ ଥିଲାକ ସୂତା । ଲକ୍ଷ୍ମୀ ଦୟା କଲେ ତାର ହେଲେ ପାଞ୍ଚପୁତ୍ର । ୧୫୮ । ବରଦେଇ କମଳିନୀ ବହୁତେ କରି ଗଲେ । ଧନ ପୁତ୍ରବତୀ ହୁଅ ବୋଲିଣ ବୋଇଲେ । ୧୫୯ । ଖିରରେ ପଣନ୍ତ ଦେଇ ଉତ୍ତପର ହୋଇ । କବାଟକଣରେ ଦେବୀ ପହୁଞ୍ଚିଲେ ଯାଇଁ । ୧୬୦ । ବାଟ ଛାଡ଼ ମହାପ୍ରଭୁ ଭିତରକୁ ଯିବି । ଦଶମୀ ଯୋଗାଡ଼ ମୁଁ ଯେ ମଣୋହି ଗ୍ରହିବି । ୧୬୧ । ଗୋବିନ୍ଦ ବୋଇଲେ ଲକ୍ଷ୍ମୀ ହୋଇଲ ବି ବାଇ । ଚଣ୍ଡାଳ ସାହିକି ଯାଇଥିଲ କାହିଁପାଇଁ । ୧୬୨ । ଅମ୍ଭେ ନ ଦେଖୁଣୁ ଯେ ଦେଖିଲେ ଜେଜ-ଶ୍ରୁଭାଇ । ଅମ୍ଭେ ଦେଖିଥିଲେ ସିନା ଦିଅନ୍ତୁ ଘୋଡ଼ାଇ । ୧୬୩ । ଯାଅ ଲକ୍ଷ୍ମୀ ତୁମ୍ଭେ ଗୋ ଆଉ କାର୍ଯ୍ୟ ନାହିଁ । ଅଛୁଆର ବହୁଳ କଲେ ମୋତେ ବଢ଼ାଇ । ୧୬୪ । ହାଣ୍ଡିଦ୍ୱାରେ ଥିବ ଲକ୍ଷ୍ମୀ ପାଣିଦ୍ୱାରେ ଥିବ । ସ୍ନାନ ନ କରିଣ ବଢ଼ଦେଉଳେ ପଶିବ । ୧୬୫ । ଅଶୁଚି ହୋଇଣ ଯେବେ ଘରକୁ ଆସିବ । ଅମ୍ଭ ଦୁଇଭାଇଙ୍କି ଯେ ହିଣ୍ଟାଳ କରିବ । ୧୬୬ । ଦାରିଦ୍ର୍ୟଭଞ୍ଜନୀ ବୋଲି ନାମ ଅଛୁ ବହି । ଦାରିଦ୍ର ଲୋକର କଷ୍ଟ ନ ପାରିବୁ ସହି । ୧୬୭ । ତୋଠାରୁ ପାପିନୀ ଆଉ ସଂସାରରେ ନାହିଁ । ମୋହର ବଚନ ଏବେ ଶୁଣ ପ୍ରାଣ ସହି । ୧୬୮ । ଜଗତେ ବୋଲନ୍ତି ତୋତେ ବାଇଠାକୁରାଣୀ । ବାଇପ୍ରାୟ ବୁଲୁଥାଉ ହୋଇ ମୋ ଘରଣୀ । ୧୬୯ । ଏକସର କରୁଛ ସହସ୍ରଘର କଷ୍ଟି । ସହସ୍ରଘର କରୁଛ ଏକସର ଭ୍ରଷ୍ଟି । ୧୭୦ । ଏମନ୍ତ ପ୍ରକାରେ ଲକ୍ଷ୍ମୀ ମହିମା ତୋହର । ଯାଅ ଲକ୍ଷ୍ମୀ ବାହାରି ଗୋ ନ ଥାଅ ମୋ ଘର । ୧୭୧ । ତୋଠାରେ କୋପ ଯେ କରି

ଛନ୍ତି କୈାସ୍ତୁଭାଇ । ଲକ୍ଷ୍ମୀଦେବୀ କହୁଛନ୍ତି ଠାକୁରଙ୍କୁ ଶୁହଁ । ୭୨ ।
କେଉଁ ଅପରାଧେଁ ମୋତେ ଛାଡ଼ିଲ ଗୋସାଇଁ । ତୁମ୍ଭର ଅଛଇ
ମୁଁ ଯେ ପ୍ରଥମ ବିବାହୀ । ୭୩ । ଛତ୍ରପଣ୍ଡ ଦେଇ ମୋତେ ଦିଅ
ସରଡ଼ାଇ । ଜଗନ୍ନାଥ କହୁଛନ୍ତି ଲକ୍ଷ୍ମୀ ମୁଖ ଶୁହଁ । ୭୪ । ଅମ୍ଭ
ଜାତିରେ ଗୋ ଛତ୍ରପଣ୍ଡ ଭଳେ ନାହିଁ । ଛାଡ଼ିବା ଖାଇବା ମୁଖ
ଦେଖି ନ ଯୋଗାଇ । ୭୫ । ଲକ୍ଷ୍ମୀଦେବୀ କହୁଛନ୍ତି ଠାକୁରଙ୍କୁ
ଶୁହଁ । ଯେତେବେଳେ ସାଗର ମନ୍ଥିଲ ପ୍ରଭୁ ଯାଇ । ୭୬ । ବେଦ
ମନ୍ତ୍ରାଦି ସହିତେ ମୋତେ ଯେ ପାଇଲ । ସେତେବେଳେ ଦସ୍ତା ବ
ଢେ ପାଣୋଉଣ ଦେଲ । ୭୭ । ମୋର ପିତା ବରୁଣ ଯେ
ତୁମ୍ଭଙ୍କୁ ବରିଲା । କନକବେଦୀରେ ନେଇ ବିଭା କରାଇଲା । ୭୮ ।
ହିଁଅ ଦେଇ ଶରଣ ପଶିଲା ତୁମ୍ଭ ଛାହିଁ । ଦଶଦୋଷ ମୋର କ୍ଷମା
କରିବାର ପାଇ । ୭୯ । ସେ ଦୋଷରୁ ବାରେ ମୋତେ
କ୍ଷମା ଯେ ନ କଲ । ଦିନା ଅପରାଧେ ମୋତେ ସରଡ଼ାଇ
ଦେଲ । ୮୦ । ଜଗନ୍ନାଥ କହୁଛନ୍ତି କୋପଭରି ହୋଇ । ବାପ
ତୋ ଲୁଣିଅ ଯେ ଖରଛ ମରୁଥାଇ । ୮୧ । ହିଅ ଝେଞ୍ଚି ତୋ
ହୁଙ୍କାଣ କହଲେ ନ ସରେ । ବାପର ଗର୍ଜନ ଶବ୍ଦେ ଦିଏ ରହି
ପାରେ । ୮୨ । ଶୁରପାଣେ ମେଘନାଦ ପ୍ରାଣୀଙ୍କ ତୋଳାଇ ।
ବନ୍ଧ ଦେଇଲେରେ ରହିଅଛୁଁ ଡୁଇଖାଇ । ୮୩ । ଲକ୍ଷ୍ମୀଦେବୀ ବୋଲୁ
ଛନ୍ତି ଠାକୁରଙ୍କୁ ଶୁହଁ । ଅମ୍ଭ ଜାତି କୁଳଗୋତ୍ର କହିଲ ଗୋସାଇଁ
ପ୍ରଭୁ କେଉଁ ସବୁ ଯାଇଅଛୁ ହେ ଗୋସାଇ । ତୁମ୍ଭ ଜାତି କୁଳ-
ଭଲ ଠିକଣା ନ ଥାଇ । ୮୪ । ପାଣ୍ଡବଙ୍କ ଘରେ ପ୍ରଭୁ ଦୂତପଣେ
ଗଲ । ବିଦୁର କେବଣ ଜାତି ତା ଘରେ ଖାଇଲ । ୮୫ । ମାତା
ତାର ଶୂଦ୍ରାଣୀ ବ୍ରାହ୍ମଣ ତାର ପିତା । ତା ଘରେ ଅନ୍ନ ଭୁଞ୍ଜିଲ
ଜଗତକରତା । ୮୬ । ଜାତିଶୀନ୍ତ ଶବରୁଣୀ • ଦନେ ତାର ଘର ।
କେନ୍ଦୁ କପିତ୍ଥ ଦେଇ ଜାତି ନେଲ ତୁମ୍ଭର । ୮୭ । ପିତା କଷା
ଫଳ ସବୁ ଅଗେ ସେ ଖାଇଲା । କାହିଁଣ ମଧୁର ଫଳ ତୁମ୍ଭଙ୍କୁ

ଦିଅଇ । ୮୯ । ଶବରୀ ଅଇଁଠା ତୁମ୍ଭେ ଛୁଣ୍ଟିଲ ଗୋସାଇଁ ।
ଦୋଷ କ୍ଷମା ହେଲେ ଆଉ କଥା କହୁବଇଁ । ୯୦ । ଯଦୁବଂଶେ
ଜନ୍ମ ହୋଇ ଗୋପରେ ଲୁଚିଲ । ଗଉଡଙ୍କ ସଙ୍ଗେ ବନେ
ଗୋରୁ ଚରାଇଲ । ୯୧ । ଦୁଧ ଦହି ସର ଲବଣୀ ଯେ ଚୋରି
କଲ । ଗୋପୀମାନଙ୍କ ମୁଖରୁ ଧିକ୍କାର ଶୁଣିଲ । ୯୨ । ଯେତେ
ସ୍ନେହେ ପାଳିଥିଲେ ଗୋପ ଗୋପୀମାନେ । ଛାଡ଼ିଲେ ରହିଲ
ଦୂରେ ନ ପଚାଅ ମନେ । ୯୩ । ଘବ୍ରଡ଼ାଇ ଦେଇ ଯେ
ବୋଲନ୍ତି ମହାବାହୁ । ଯାଅ ଯାଅ ବୋଇଲେ ତୁ ଛପାଇଁ ନ
ଯାଉ । ୯୪ । ଜଗନ୍ନାଥ କହୁଛନ୍ତି ଏମନ୍ତ କହିବୁ । ମାଣେ
ମାଣେ ପଡ଼ ଛୋଟେ ଭାତ ଦେଉଥିବୁ । ୯୫ । ଭାଇଙ୍କି ବୁଝାଇ
ପଛେ ତୁମ୍ଭଙ୍କ ଅଣିବୁ । ଭାଇଙ୍କ ଅଜ୍ଞାରୁ ଅମ୍ଭେ ହେଳା ନ
କରିବୁଁ । ୯୬ । ଲକ୍ଷ୍ମୀଦେବୀ କହନ୍ତି ପଣ୍ଡରେ କାର୍ଯ୍ୟ ନାହିଁ ।
ଅନାଥ ଅରକ୍ଷ ପ୍ରାପ୍ତ ଯାଉଅଛୁ ମୁହିଁ । ୯୭ । ସ୍ତ୍ରୀ ଅଲକ୍ଷଣୀ
ହୋଇ ମୁହିଁ ଯେ ନୁହଇ । ପିତାର ଘରକୁ ମୁଁ ଯେ ବାହାରି
ଯିବଇ । ୯୮ । ତୁମ୍ଭ ଅଳଙ୍କାର ପ୍ରଭୁ କାଢ଼ିଣ ଯେ ନିଅ ।
ପଛକେ ଅମ୍ଭଙ୍କୁ ଆଉ ବୋଲଣା ନ ଦିଅ । ୯୯ । ଗୋବିନ୍ଦ
ବୋଲନ୍ତି ଲକ୍ଷ୍ମୀ ହୋଇଲୁ କି ବାଇ । ଅଜ୍ଞ ଅଳଙ୍କାର ଅମ୍ଭେ
ନେବୁ କାହିଁପାଇଁ । ୧୦୦ । ବାପ ଘୋ ଲୁଣିଆ ଲୋ ଗରଜ
ମରୁଥାଇ । ତାର ହୋଇ ଚେଷ୍ଟା ତୁ କିସ କହୁବଇ । ୧୦୧ ।
ଭାଇଯାର ଦେହେ ଯେଉଁ ଅଳଙ୍କାର ଥାଏ । ସ୍ୱାମୀ ହୋଇ ତାହା
ଠାରୁ କାଢ଼ିଣ କି ନେବ । ୧୦୨ । ଠାକୁରାଣୀ କହୁଛନ୍ତି ଶ୍ରୀମୁଖରୁ
ଶୁଣ । ତୁମ୍ଭର ଅଟଇ ମୁ ଯେ ପ୍ରଥମେ ବିବାହୀ । ୧୦୩ । ପଛରେ
କହୁବ ଲକ୍ଷ୍ମୀ ଅମ୍ଭ ଘରେ ଥିଲା । ସହସ୍ରଙ୍କାର ଅଳଙ୍କାର
ଯୋଗିଗଲି । ୧୦୪ । ଏତେ ଯେ ଅକ୍ଷାର ମୋତେ ନ ଦିଅ
ଗୋସାଇଁ । ତୁମ୍ଭ ଅଳଙ୍କାରମାନ ନିଅ କାହୁଡ଼ାଇ । ୧୦୫ ।
ଶିରରୁ କାଢ଼ନ୍ତି ଲକ୍ଷ୍ମୀ ମୁକୁତାର ଜାଲ । ହୃଦରୁ କାଢ଼ିଲେ

ଇନ୍ଦ୍ର ଗୋବିନ୍ଦ କାଣ୍ଟିଲ୍ଲ । ୯୬ । ଅଣ୍ଟାରୁ କାଢ଼ନ୍ତି ମାଣ ରତ୍ନ-
ଓଡ଼ଆଣି । ନାସିକାରୁ କାଢ଼ିଲେ ଯେ ମୁକ୍ତାର ବସଣୀ । ୯୭ ।
କର୍ଣ୍ଣଦ୍ୱୟରୁ କାଢ଼ିଲେ ହୀରାର କୁଣ୍ଡଳ । ଗଳାରୁ କାଢ଼ିଲେ ଯେ
ଦୋସରୀ ରତ୍ନମାଳ । ୯୮ । ପାଦରୁ କାଢ଼ିଲେ ଦେବୀ ନୂପୁର
ବାଜେଣୀ । ଅଙ୍ଗୁଷ୍ଠିରୁ କାଢ଼ନ୍ତି ଯେ ବୃଣ୍ଟିଆ ବାଜେଣୀ । ୯୯ ।
ଅନ୍ୟ ଅଲଙ୍କାରମାନ କ କହିବ ଆଉ । କୁଣ୍ଡ କଳାରୁ ଦଶିଲ
ସବୁ ବାହ ଦାହ । ୧୦୦ । ସବୁ ଅଳଙ୍କାରମାନ ଏକଠାବ
କଲେ । ଇଶ ଦୀନବନ୍ଧୁ ଏହା ବୋଲି ସମର୍ପିଲେ ॥ ଗୋବିନ୍ଦ
ବୋଲନ୍ତି ଏହା କି କରିବୁଁ ନେଇ । ଆମ୍ଭର ଏ ଅଳଙ୍କାର
ପ୍ରୟୋଜନ ନାହିଁ । ୧୦୨ । ଗୃହସ୍ଥ ହୋଇଣ ଯେବେ ଗାର୍ଜ୍ଜାରୁ
ଉଠଇ । ଛମାସରୁ ଲାଜ ଲୁଗା ଲେଖିଣ ଦଅଇ । ୧୦୩ । ଏହି
ଅଲଙ୍କାର ସବୁ ତୁମ୍ଭେ ଘେନିଯାଅ । ଦରଲାଗି କରି ଲାଜ ଲୁଗା
କରୁଥାଅ । ୧୦୪ । ଲକ୍ଷ୍ମୀଦେବୀ କହନ୍ତି ପ୍ରଭୁଙ୍କ ମୁଖ ଚାହିଁ । ସାବ-
ଧାନ ହୋଇ ଶୁଣ ବ୍ରହ୍ମାଣ୍ଡ ଗୋସାଇଁ । ୧୦୫ । ମୋର ତୁଲ୍ୟ
ଆଉ ଯେଉଁ ଭାରଯା ଅଛିକ । ଏହି ସବୁ ଅଲଙ୍କାର ତାହାକୁ ଯେ
ଦେବ । ୧୦୬ । ମୁହିଁ ଯାଉଅଛୁ ହୀନ ଅଲକ୍ଷ୍ମୀ ହୋଇ । ମୋହ
ଅଉଣାପ ଯେନ ପ୍ରଭୁ ଭାବଗ୍ରାହୀ । ୧୦୭ । ସତ୍ୟ ଯେବେ ଇନ୍ଦ୍ର
ସୂର୍ଯ୍ୟ ହୋନ୍ତି ଅଟଯାଇ । ତୁମ୍ଭଙ୍କୁ ଅନ୍ନ ନ ମିଳି ଅଛେ ଜଗନ୍ନାଥ ॥
ବାରବର୍ଷ ଯାଏ ତୁମ୍ଭେ ଦରିଦ୍ର ହୋଇବ । ଅନ୍ନ ବସ୍ତ୍ର ଜଳ ଯେ
ତୁମ୍ଭଙ୍କୁ ନ ମିଳିବ । ୧୦୯ । ମୁହିଁ ଚଣ୍ଡାଳୁଣୀ ଯେବେ ଛେଦ ଦେବ
ଅନ୍ନ । ଭୋଜନ କରିବ ତୁମ୍ଭେ କାଳୀଙ୍କ ଗଞ୍ଜନ । ୧୧୦ । ଏତେ
ବୋଲି ଲକ୍ଷ୍ମୀଦେବୀ ଶାପ ଦେଇ ଗଲେ । ଦେଉଳୁଁ ବାହାର
ହୋଇ କେତେଦୂରେ ହେଲେ । ୧୧୧ । ଏହା ଦେଖି ଦାସୀ-
ମାନେ ସଙ୍ଗେ ଗୋଡ଼ାଇଲେ । ଦାସୀଙ୍କି ଅନାଇ ଲକ୍ଷ୍ମୀଦେବୀ
ବୋଲୁଛନ୍ତି । ୧୧୨ । ମୁହିଁ ଯାଉଅଛୁ ଗୃହ ଅଲକ୍ଷଣୀ ହୋଇ ।
ମୋର ପଛେ ତୁମ୍ଭେମାନେ ଅସୁଛ ଦୟାଇଁ । ୧୧୩ । ଏହି-

ପର ହୋଇ ଯେବେ ପୀଡାସର ଯିବ । ଏହିଦିନ ମାସ ତହିଁ
ରହି ନ ପାରିବ । ୧୧୪ । ଜଗନ୍ନାଥ ପ୍ରାପ୍ତ ବନ୍ଧୁ ପିଡା ଘରେ
ଯିବେ । ଜଗନ୍ନାଥ ଗଲେ ମୋତେ ସମର୍ପିଣ ଦେବେ । ୧୧୫ ।
ଶାପ ଦେବା ଫଳ ମୋ ହୋଇବ ଅକାରଣ । ଦରିଦ୍ର ନୋହିବେ
ପ୍ରଭୁ ଦେବ ଭଗବାନ । ୧୧୬ । ଏତେ ବୋଲି ଲକ୍ଷ୍ମୀଦେବୀ ମନେ
ଚିନ୍ତା କଲେ । ବିଶ୍ୱକର୍ମାକୁ ଯେ ମାଏ ମନେ ସୁମରିଲେ ।୧୧୭।
ବୈକୁଣ୍ଠପୁରରେ ବିଶ୍ୱକର୍ମା ରହିଥିଲା । ସ୍ମରଣ ମାତ୍ରକେ ଲକ୍ଷ୍ମୀ
ସମ୍ମୁଖରେ ମିଳିଲା । ୧୧୮ । କିସ ଆଜ୍ଞା ହେଉ ମୋତେ ଲକ୍ଷ୍ମୀ ମହା-
ମାୟୀ । ଶୁଣି ଆଜ୍ଞା ଦେଲେ ବିଶ୍ୱକର୍ମାକୁ ଯେ ଗହିଁ । ୧୧୯ ।
ଚଣ୍ଡାଳୁଣୀ ବାଡେ ମୋତେ ଦେଲେ ସଇତାଇ । ଦଣ୍ଡେ ଏ ଭୁବନ
ତୋଳ ପାରିବୁ କି ଦେଇ । ୧୨୦ । ଆଜ୍ଞା ମାତ୍ରେ ବିଶ୍ୱକର୍ମା
ଚଳଣ ଯେ ଗଲା । ଚଉକୋଣ ପ୍ରମାଣେ ଭୁଅସ ତୋଳାଇଲା ॥
ସୁବର୍ଣ୍ଣର କାନ୍ଥମାନ ସବୁ ଘର କଲା । ହୀରା ନୀଳା ମାଣିକ୍ୟାଦି
ତହିଁ ଗନ୍ଥାଇଲା ।୧୨୧। ଗଣ୍ଡିକରେ ଅସଂଖ୍ୟ ମୁକୁତା ଲଗାଇଲା ।
ପ୍ରବାଳର ସ୍ତମ୍ଭମାନ ତହିଁରେ ରଚିଲା । ୧୨୨ । ପୁର ଦେଖି
କମଳନ୍ମା ସନ୍ତୁଷ୍ଟ ହୋଇଲେ । ବିଶ୍ୱକର୍ମାକୁ ବହୁଳ ପ୍ରଶଂସା ଯେ
କଲେ । ୧୨୩ । ବୈକୁଣ୍ଠପୁରକୁ ବିଶ୍ୱକର୍ମା ଚଳିଗଲେ । ଅଷ୍ଟ
ବେତାଳଙ୍କୁ ଡାକି ଦେବୀ ଆଜ୍ଞା ଦେଲେ । ୧୨୪ । ଅଷ୍ଟବେତାଳେ
ରେ ତୁମ୍ଭେ ଏମନ୍ତ କରିବ । ପ୍ରଥମେ ଶ୍ରୀକ୍ଷେତ୍ରଶାଳେ ଯାଇଣ
ପଶିବ । ଷାଠିଏପଉଟି ଭୋଗ ଭୁଞ୍ଜିବ ଯେ ତହିଁ । ତେଇପୌଟି
ବ୍ୟଞ୍ଜନ ଖାଇବ ହର୍ଷ ହୋଇ । ୧୨୫ । ଶାକ ମୁଗ ମଧୁ ରୁଚି
ଭକ୍ତ କାନ୍ତି ଗୁଡ଼ । ଅମ୍ବିଳ ଖାଇବ ଦଣ୍ଡ ଶାକର ମିଶାଇ ।୧୨୮।
ଅମୃତ ମଣୋହି ତହିଁ ଭୋଜନ କରିବ । ହାଣ୍ଡି କୁଣ୍ଡେଇବ
ଏକଠାବେ କରିଥିବ । ୧୨୯ । ତହିଁ ଯାଇ ଭଣ୍ଡାର ମଧ୍ୟରେ
ଯେ ପଶିବ । ବାଉନକୋଠି ଭଣ୍ଡାର ବହୁ ଯେ ଆଣିବ । ୧୩୦ ।
କାଏକଡାକର ଦ୍ରବ୍ୟ କିଛି ନ ରଖିବ । ସବୁ ବହୁ ଅଣି ମୋର

ଯାଗେ ସମର୍ପିବ । ୧୪୧ । ବେତାଳ ବୋଇଲେ ମହାଲକ୍ଷ୍ମୀ ମୁଖ
ଚାହିଁ । ଜଗନ୍ନାଥ ମହାବାହୁ ଥିବେ କହିଁ ରହି । ୧୪୨ ।
କେମନ୍ତ କରିଣ କହୁଁ ଅଛିରୁ ବୁହାଇ । ଶୁଣି ପଦ୍ମାଳୟା ଇନ୍ଦ୍ରା-
ବତୀକ ଯେ ଗଲ । ୧୪୩ । ରାମ କୃଷ୍ଣ ନନ୍ଦନରେ ଇନ୍ଦ୍ରା ଭୁ
ଯାଇଲୁ । କାଲ ବେଳ ହୁଇଯାଉଯା ଏ ନଷ୍ଟଇଲୁ । ୧୪୪ । ଅଣ୍ଟାପାଇଁ
ଇନ୍ଦ୍ରାବତୀ ଶୀଘ୍ର ଚଳିଗଲେ । ରାମକୃଷ୍ଣ ନନ୍ଦନରେ ଇନ୍ଦ୍ରା ଯେ
ଯାଇଲେ । ୧୪୫ । ପାକଶାଳାରେ ବେତାଳ ପ୍ରବେଶ ହୋଇଲେ
ପ୍ରବେଶ ହୋଇଣ ଭୋଗ ସକଳ ଖାଇଲେ । ୧୪୬ । ତାଣ୍ଡିମାନ
ସବୁ ଏକଠାରେ କରୁଥିଲେ । ଭଣ୍ଡାରଘରରେ ଅଷ୍ଟବେତାଳେ
ପଶିଲେ । ୧୪୭ । ଭଣ୍ଡାର ଘରରେ ଯହୁଁ ପଶିଲେକ ଯାଇ ।
ବାଇଶକୋଟି ଭଣ୍ଡାର ଅଛିଲେ ବୁହାଇ । ୧୪୮ । ଅଲଙ୍କ ରତନ
ନେତ ସୁବର୍ଣ୍ଣ ଯେତେ ମଣି । ବାଇଶକୋଟି ଭଣ୍ଡାର ସବୁ ବନ୍ଧଅଛି ॥
ଗ୍ରନ୍ଥ ନେଇସଉଯାକ ବେତାଳେ ଯେ କହୁଁ । କୁବେରୁ ଛାଡ଼ି
ଯାଏ ସବୁ ନେଲେ ବନ୍ଧୁ । ୧୫୦ । ଦେଖିଣ ପରମଲକ୍ଷ୍ମୀ ସନ୍ତୁଷ୍ଟ
ହୋଇଲେ । ତୁମ୍ଭେ ଅତି ପୁଣ୍ୟପଣ କଲରେ ବୋଇଲେ । ୧୫୧ ।
ପ୍ରଶଂସା କରିଣ ମାଏ କହନ୍ତି ଯେ କଥା । ସବୁଦ୍ରବ୍ୟ ଅଛିଲଇ
ଇହୁଁଗାଁ ନାହିଁ । ୧୫୨ । ପାଞ୍ଚଲକ୍ଷ ଟଙ୍କା ମୂଲ୍ୟ ଯେ ଖଟ ଅଟଇ ।
ଯାଅରେ ବେତାଳେ ଏବେ ଖଟ ଅଣ ବନ୍ଧୁ । ୧୫୩ । ଯେତେ-
ବେଳେ ଜଗନ୍ନାଥ ବଳଭଦ୍ର ହୋଇବେ । ଇହୁଁଖଟ ଦାନକରି ଧନ
କଟାଇବେ । ୧୫୪ । ଜଗନ୍ନାଥ ପ୍ରଭୁ ଯେବେ ମୋତେ ନ
ଖୋଜିବେ । ତାଙ୍କ୍ରିଙ୍କି ପୁତ୍ରୁଷମାନେ ଅନ୍ନ ନ ମିଳିବେ । ୧୫୫ ।
ମୋତେ ସେଇ ପ୍ରଭୁ ଯେବେ ନ କରିବେ ପର । କଳିଯୁଗେ
ନାରୀଙ୍କି ଯେ ନ ଖୋଜିବେ ନର । ୧୫୬ । ବେତାଳେ ଯେ
ବୋଲୁଛନ୍ତି ରମା ମୁଖ ଚାହିଁ । ଇହୁଁଖଟେ ଶୋଇଛନ୍ତି ହୁଲ ଗୋଟି
ଖାଇ । ୧୫୭ । ଶଳକୋଟି ପଦ୍ମିନୀ ଅଛନ୍ତି କଲାମ । ଯେ
ଖଟରେ ଶୋଇଛନ୍ତି କାଳୀସୃଗନ୍ଧନ । ୧୫୮ । ଖାଇକୋଟି ପଦ୍-

ଭରୁ ଅଟେ ବଡ଼ ଗରୁ । ଜଗନ୍ନାଥ ଅଟନ୍ତି ଅଚଳ ମହାମେରୁ ॥ ମହାଲକ୍ଷ୍ମୀ ବୋଇଲେ ରେ ଏମନ୍ତ କରିବ । ବଉଡଅ ଗଣ୍ଠ ଏକ-ଗୋଟି ଯେ ଅଣିବ । ୧୬୦ । ରାମକୃଷ୍ଣ ଦୁହଙ୍କୁ ଯେ ଗଡ଼ାଇଣ ଦେବ । ଶୋଇବାର ଇହୁଗଣ୍ଠ ବହୁଣ ଅଣିବ । ୧୬୧ । ଏହା ଶୁଣି ବେତାଳେ ଯେ ଶୀଘ୍ରେ ଚଳିଗଲେ । ଇହୁଗଣ୍ଠ ପାଶେ ବଉଡଅଗଣ୍ଠ ଦେଲେ । ୧୬୨ । ବଳରାମଙ୍କୁ ପ୍ରଥମେ ଧଇଲେକ ଯାଇଁ । ବଉ-ଡଅଗଣ୍ଠକୁ ଯେ ଦେଲେ ଗଡଆଇ । ୧୬୩ । ଏଉତ୍ତାରେ ଜଗନ୍ନାଥ ପ୍ରଭୁଙ୍କୁ ଧଇଲେ । ବଉଡଅଗଣ୍ଠ ଉପରକୁ ଗଡ଼ାଇଲେ । । ୧୬୪ । ଶୋଇବାର ଇହୁଗଣ୍ଠ ଅଣିଲେକ ବହୁ । ମହାଲକ୍ଷ୍ମୀ ଅଗେ ଦେଲେ ଅନନ୍ଦରେ ନେଇ । ୧୬୫ । ବଳରାମ ପିନ୍ଧିବାର ପାଟ ବହୁ ନେଲେ । ଜଗନ୍ନାଥ ପିନ୍ଧିବାର ନେଇ ବହୁନେଲେ ॥ ଦେଖିଣ ପରମଲକ୍ଷ୍ମୀ ସନ୍ତୋଷ ହୋଇଲେ । ଅଷ୍ଟବେତାଳଙ୍କୁ ବର ଢାଳିଣ ଯେ ଦେଲେ । ୧୬୬ । ଅରେ ଅଷ୍ଟବେତାଳ ରେ ଏମନ୍ତ ହୋଇବ । ବୈକୁଣ୍ଠପୁରରେ ଯାଇଁ ସୁଖରେ ରହିବ । ୧୬୭ । ଆଜ୍ଞା ପାଇ ସେ ବେତାଳଗଣ ବେଗେ ଗଲେ । ବୈକୁଣ୍ଠପୁରରେ ଯାଇଁ ପ୍ରବେଶ ହୋଇଲେ । ୧୬୯ । ମହାଲକ୍ଷ୍ମୀ ଭଣ୍ଡି ଏକ କଥା ବିଚାରିଲେ । ସରସ୍ୱତୀ ଦେବୀଙ୍କି ଯେ ତୁରିତେ ସୁମରିଲେ । ୧୭୦ । ବୋଇଲେ ଗୋ ସରସ୍ୱତୀ ଏମନ୍ତ କରିବ । ରାଜ୍ୟ ରାଜ୍ୟ ହୋଇ ଘରେ ଘରେ ବୁଲୁଥିବ । ୧୭୧ । ସବୁଦ୍ୱାରେ ଜଗନ୍ନାଥ ଭୁଲି-ବେକ ଯାଇଁ । ସବୁକଣ୍ଠେ ସରସ୍ୱତୀ ବଢେଇବ ଭୁଲୁ । ୧୭୨ । ଅନ୍ନ ଯେ ମାଗିଲେ ପାଣି ମୁଣ୍ଡା କେ ନ ଦେବେ । ଏତେ ଦୁଃଖ ପାଇଲେ ସେ ମୋତେ ସୁମରିବେ । ୧୭୩ । ସେ ଦନଇ ରାମକୃଷ୍ଣ ମୁଖରେ ପାଇବ । ବେଳ ଦୁଇ ସନ୍ଧ କରେ ଛତ୍ରୀ ଯେ ଲଙ୍ଘଲ ॥ ବଳରାମ କହୁଛନ୍ତି ଶୁଣରେ କହ୍ନାଇ । ଖାଇଲ ଛାଇଲ ଅଚ୍ଛ କଛୁ ଶୁଦ୍ଧିନାହିଁ । ୧୭୪ । ସୁଦରଥ ପଣ୍ଡାରିଙ୍କ ଭୁଣ୍ଡ ଶୁଦ୍ଧିନାହିଁ । ଦାସୀ ପରିବାରୀ ଯେ ପରିଷ୍ଟ ଗଲେ ତାହିଁ । ୧୭୫ । ଶ୍ରୀମୁଖ ପଖାଳିବାକୁ

ଜଳ ନ ମିଳଇ । କି ବୁଦ୍ଧି କରିବା ଏବେ କହ ରେ କହ୍ନାଇ ॥
ଜଗନ୍ନାଥ କହୁଛନ୍ତି ବଳରାମ ଭାଇ । ଲକ୍ଷ୍ମୀ ଛାଡ଼ ବାଲକୁ ଯେ
ଏମନ୍ତ ହୁଅଇ । ୧୭୮ । ବଳରାମ କହୁଛନ୍ତି ଶୁଣରେ କହ୍ନାଇ
ଭାରିଯା ଛାଡ଼ିବୁ ତୁ ଏମନ୍ତ କଥା କହୁ । ୧୭୯ । ଜାହାର ଭାରିଯା
ଯେବେ ରୁଷି ବହି ଯାଇ । ତାର ଗୃହସ୍ଥ କି ଭଲ ଗ୍ରହଣ ନ
ଖାଇ । ୧୮୦ । ଭଣ୍ଡାରଘରକୁ ଦେଖେ କଲେ ଦୁଇଭାଇ । ଭଣ୍ଡାରେ
ଦେଖିଲେ ବସ୍ତୁ ପଦାର୍ଥ ଯେ ନାହିଁ । ୧୮୧ । ବଳରାମ କହୁଛନ୍ତି
କାହିଁ କିସ ହେଲା । ବାଉନ କୋଟି ଭଣ୍ଡାର କେ ଯେଉଣ ଗଲା ।
ଲକ୍ଷେଶ୍ୱର ଚାଉଳେ ଦହିଲେ ନ ସରଇ । କ୍ଷଣକ ଭିତରେ କିଏ
ଯେଉଁଗଲା ବହି । ୧୮୩ । ସୁବର୍ଣ୍ଣମୁଦ୍ରିଏ ବଳରାମ ଯେ ପାଇଲେ ।
ସାଢ଼ େଗୋଟି ଗଣ୍ଠି ଦେଇ କାନରେ ବାନ୍ଧିଲେ । ୧୮୪ । ଜଗନ୍ନାଥ
ବୋଇଲେ ହେ କି ପାଇଲ ଭାଇ । ବଳରାମ କହୁଛନ୍ତି ଧନ ପାଇ
ଲାଇ । ୧୮୫ । ଶୁଦ୍ଧସୁବର୍ଣ୍ଣର ଯେଉଁ ଧନ ହୋଇଥିଲା । କାଣି
କଉଡ଼ି କଡ଼ାକୁ ସମାନ ନୋହିଲା । ୧୮୬ । ଜଗନ୍ନାଥ କହୁଛନ୍ତି
ବଳରାମଭାଇ । କେଙ୍ଗପିତ୍ତଳ ଗଣ୍ଡିକ ପାଇଥିଲ କାହିଁ । ୧୮୭ ।
ବଳରାମ କହୁଛନ୍ତି କାନ ମାଡ଼ୁଅଛୁ । ପାଇଥିବା ସ୍ୱର୍ଣ୍ଣ କେଙ୍ଗପିତଳ
ହେଉଛୁ । ୧୮୮ । ସେଠାରୁ ବାହାରି ଗଲେ ଦୁଇଗୋଟି ଭାଇ ।
ପାକଶାଳଦ୍ୱାରେ ଯେ ପ୍ରବେଶ ହେଲେ ଯାଇ । ୧୮୯ । ବଳରାମ
ଠିଆ ହେଲେ ଦୁଆର ମୁହଁରୁ । ଜଗନ୍ନାଥ ପ୍ରଭୁ ଗଲେ ଗ୍ରେଷାଇ
ଘରକୁ । ୧୯୦ । ଦେହରେ ଲାଗିଲା କଳା ମୁହଁରେ ଲାଗିଲା ।
କଳାଶ୍ରୀମୁଖ ଗୋଟିକ ଝଲକ ଦିଶିଲା । ୧୯୧ । ବଳରାମ କହୁଛନ୍ତି
ଶୁଣ ଜଗନ୍ନାଥ । କଡ଼ଙ୍କିଆ ବୋଲି ଲୋକେ ବୋଲନ୍ତି ଜଗତ ॥
ମୋତେ ଅନ୍ନ ନ ଦେଉଣ ସବୁ ଖାଉ ତୁହି । ଜଗନ୍ନାଥ କହୁଛନ୍ତି
ଶୁଣ ଜ୍ୟେଷ୍ଠଭାଇ । ୧୯୩ । ଅନ୍ନ କାହିଁ ମିଳିବ ହେ ଚୂଲି ସୁଧା
ନାହିଁ । ନ ବୁଝି ଏପରି କିପାଁ କହୁଛ କୋଧାଇ । ୧୯୪ । ସେଠାରୁ
ଯାଇଁ ଦେଖିଲେ ଧାନଭ ମଦେଇ । ଲକ୍ଷ ଲକ୍ଷ ଭରଣ ଯେ ଧାନ

ଯହିଁ ଥାଇ ।୨୯୭। ତହିଁରେ ଦେଖିଲେ ଗୃହ ଗୋଟିଏ ଯେ ନାହିଁ ।
ତହିଁ ଗଲେ ଦୁଇଜଣ ବ୍ରାହ୍ମଣ ଯେ ହୋଇ ॥ ଇନ୍ଦ୍ରଦ୍ୟୁମ୍ନକୂଳେ
ଯାଇ ପ୍ରବେଶ ହୋଇଲେ । ଟୋପିଏ ମୁଣ୍ଡା ପାଣି ଯେ ତହିଁ ନ
ଦେଖିଲେ ।୨୯୮। ବଡ଼ଦେଉଳରେ ଯାଇ ପ୍ରବେଶ ହୋଇଲେ ॥
ସେ ଦିନରେ ଉପବାସ କରିଣ ରହିଲେ ।୨୯୯। ବେଳ ଦୁଇସନ୍ଧ-
କରେ ନିଦ୍ରା ଯେ ନାହିଲା । ମୁଖପ୍ରକ୍ଷାଳନ ଅର୍ଥେ ପାଣି ନ ମିଳିଲା ॥
କି ବୁଦ୍ଧି କରିବା ଏବେ ବୁଦ୍ଧି ଦିଶୁନାହିଁ । ବଳରାମ କହୁଛନ୍ତି ଶୁଣ
ରେ କହ୍ନାଇ ।୩୦୦। କାଲି ଉପବାସେ ଯେ ରହିଲୁଁ ଦୁଇଭାଇ ।
ଆଜ ପାଦେ ଚାଲିବାକୁ ବଳ ପାଉନାହିଁ ।୩୦୧। କେଉଁଠାରୁ
ଯେବେ ଆଜ ନ ମିଳିବ ଅନ୍ନ । କେମନ୍ତ ପ୍ରକାରେ ଆମ୍ଭେ ପାଇବା
ଜୀବନ ।୩୦୨। ବଳରାମ କହୁଛନ୍ତି ଶୁଣ ଅରେ ବାବା । ନଗରରେ
ଭିକ୍ଷା ମାଗି ଜୀବନ ପୋଷିବା ।୩୦୩। କାନ୍ଧରେ ପକାଇ ଝୁଣ୍ଡା
ଉରଣ୍ଡି ପଇତା । ହସ୍ତରେ ଧଇଲେ ଭାଇ ଦୁହେଁ ଭଙ୍ଗା ଛତା ॥
ଛତା ଘେନିବାକୁ ଜଳ କାହିଁ ନ ପାଉନ୍ତି । ଯାହା ଘରଠାରୁ ପାଣି
ମାଗିବାକୁ ଯାନ୍ତି ।୩୦୪। ଚୋର ଗଣ୍ଡ ବୋଲି ମାରି ଘଉଡ଼ାଇ
ଦିଅନ୍ତି । ସେଠାରୁ ଦୁଇଭାଇ ଭୟରେ ପଳାନ୍ତି ।୩୦୬। ଜଗ-
ନ୍ନାଥ କହୁଛନ୍ତି ଶୁଣ ଜ୍ୟେଷ୍ଠଭାଇ । ବଡ଼ପଣ୍ଡା ଘରଠାରୁ ଏବେ ଚାଲ
ଯାଇ ।୩୦୭। ହସ୍ତ ଧରାଧରି ହୋଇ ଦୁଇଭାଇ ଗଲେ । ବଡ଼-
ପଣ୍ଡା ଘରଠାରେ ପ୍ରବେଶ ହୋଇଲେ ।୩୦୮। ବଧୂ ଡାକ କହଇ
ଯେ ଶାଶୁ ଆଗେ ଯାଇଁ । ବ୍ରାହ୍ମଣ ଯେ ଦୁଇଗୋଟି ଆସୁଛନ୍ତି
ଧାଇ ।୩୦୯। ଶାଶୁ ଚଣ୍ଡିବୁଢ଼ୀ ତାଙ୍କୁ ଚିହ୍ନି ନ ପାରିଲା । ଧାଇଁ
ଯାଇ ବେଗେ ଦାଣ୍ଡକବାଟ ଦେଇଲା ।୩୧୦। ଅଣ ଅଣ ବୋଲୁ
ଲେ ପିଟଣା ବଡଠେଙ୍ଗା । ଗଣ୍ଡ ଚୋର ଦୁଇଗୋଟା ଘଉଡ଼ାଇ
ଦେବା ।୩୧୧। ଶୁଣି ଦୁଇଭାଇ ତହୁଁ ଡରେ ପଳାଇଲେ । ସାମ-
ବେଦ ଯଜୁର୍ବେଦ ଉଚ୍ଚାରଣ କଲେ ।୩୧୨। ଶୁଣି ଶୁଷ୍କଭକ୍ତଗଣ
ପଲ୍ଲବ ଉଠିଲେ । ଭିକ୍ଷୁକ ବ୍ରାହ୍ମଣ ବୋଲି ଅନୁମାନ କଲେ ।୩୧୩।

ବସ ହୋ ହୋଇ ସେ ଦୁଇଭାଇଙ୍କି କହିଲେ । ଗୃହମଲ୍ଲ ମିଶାଇ
ବେଗେ ସେ ଗୃହରେ । ୬୪ । ଅଟିକା ବଦଳିମନ୍ତ ଦୁଇଖଣ୍ଡ ଅଣି ।
ପଥ ପକାଇଣ ଭଣ୍ଡୁଁ ସିଣ୍ଟଲେକ ସାଣି । ୬୫ । ବଂଶୀ ସେବ
ବ୍ରାହ୍ମଣୀ ସେ ଅନ ଅଣି ଗଲା । ଅନ୍ନ ବି ବାଢ଼ିବ ଭାର ଚାଣ୍ଡି
ଦେଶେ ଗଲା । ୬୬ । ଲକ୍ଷ୍ମୀଦ୍ରୋହୀ ପୁରୁଷ ଏ ବୋଲଣ
ଜାଣିଲେ । ପାକଶାଳାରୁ ଆସିଣ ପ୍ରବେଶ ହୋଇଲେ । ୬୭ ।
ଦୁଇଗୋଟି ଭାଇଙ୍କର ହସ୍ତରୁ ଧଇଲେ । ଭୁବନ ବଢ଼ ନେଇ
ବାଣ୍ଡରେ ଛାଡିଲେ । ୬୮ । ଭଣ୍ଡୁଁ ଦୁଇଭାଇ ସେ ଛାଗ୍ଣ ହୋଇ
ଗଲେ । କବର ଖାଡ଼ରେ ଯାଇଁ ପ୍ରବେଶ ହୋଇଲେ । ୬୯ ।
କ୍ଷୁଧାର୍ତ୍ତ ବ୍ରାହ୍ମଣ ବୋଲ ବହର ଜାଣିଲେ । ଗାଇ ମାଣ ଗୃହ ଯାଖ
ଅଣି ବେଗେ ଦେଲେ । ୭୦ । ଅନ୍ତର୍ଗତେ ଜାଣିଲେ ସେ ଦେବୀ
କମଳିନୀ । ପବନକୁ ଡାକ ଆଜ୍ଞା ଦେଲେ ଭଗବତୀ ।୭୧। ଅରେ
ଅରେ ପବନ ତୁ ବେଗ ହୋଇ ଯିବୁ । ଗାଇ ମାଣ ଗୃହ ଯାଞ୍ଚ
ଉଡାଇଣ ନେବୁ । ୭୨ । ଆଜ୍ଞା ପାଇ ପବନ ସେ ବେଗେ ଚଳ-
ଗଲା । ପ୍ରଭୁଙ୍କ ଅଗରୁ ଗାଇ ଉଡାଇଣ ନେଲା । ୭୩ । ବଳରାମ
କହୁଛନ୍ତି ଶୁଣ ରେ କହ୍ନାଇ । ପ୍ରାଣ ଯିବାବେଳେ ତାଭ ଭୁଲ
ଲୋଡ଼ ନାହିଁ । ୭୪ । ପଦ୍ମଯୋଗଣୀକି ଗୃହ ଯିବା ଦୁଇଭାଇ ।
ପଦ୍ମଫଳ ଖାଇ ପ୍ରାଣ ବଞ୍ଚାଇବା ଭଣ୍ଡୁଁ ।୭୫। ଫଳ ପୁଷ୍ପ ବଇ ଭଣ୍ଡୁଁ
ଶୁଦ୍ଧ ଏ ଅଣିବା । ଅଧିକ ମିଳିଲେ ବହୁ ଯତ୍ନେ ରଖିବା । ୭୬ ।
ଏମନ୍ତେ ଦମ୍ଭ କରି ଦୁଇଭାଇ ଗଲେ । ପଦ୍ମପୁଷ୍କରିଣୀରେ ସେ
ପ୍ରବେଶ ହୋଇଲେ । ୭୭ । ପଦ୍ମଯୋଗଣୀରେ ସାତଭାଇ ପାଣି
ଥିଲା । ଲକ୍ଷ୍ମୀ ଆଜ୍ଞା ମାତ୍ରେ ତାହା ପଙ୍କ ହୋଇଗଲା । ୭୮ ।
ଜଗନ୍ନାଥ କହୁଛନ୍ତି କି ବୁଦ୍ଧି କରିବା । ଜଳ ନାହିଁ ଫଳ ଅବା
କାହିଁରୁ ପାଇବା ।୭୯। ଏହା କହି ଦୁଇଭାଇ ଭଣ୍ଡୁଁ ଚଳଗଲେ ।
ଯାଉଁ ଯାଉଁ ବାଟେ ଏକ ଯୋଗୀକି ଦେଖିଲେ । ୮୦ । ଜଗନ୍ନାଥ
କହୁଛନ୍ତି ଶୁଣ ଅହେ ନାଥ । ତୁମ୍ଭର ଥାଇବୁ ସେ ଆମ୍ଭଙ୍କୁ ପଥ

ଖାଇ । ୨୩୨ । ସଚ୍ଚ୍ୟାନନ୍ଦ ବୋଲେ ରାମକୃଷ୍ଣ ମୁଣ୍ଡ ଗୃହ୍ନ । ଲକ୍ଷ୍ମୀ-
ଦ୍ରୋହୀ ହୋଇଅଛ ତୁମ୍ଭେ ଦୁଇଭାଇ । ୨୩୩ । ଦୁଧ ଅନ୍ନରେ ଯେ
ମୋର ଥାଳ ପୂରିଥିଲା । ତୁମ୍ଭେ ମାଗନ୍ତେଣ ଅନ୍ନ ଶୂନ୍ୟ ହୋଇ-
ଗଲା । ୨୩୪ । ଅନ୍ନ ଜଳ ନ ମିଳିବ ତୁମ୍ଭଙ୍କୁ ଯେ କାହିଁ । ସମୁଦ୍ର-
କୂଳକୁ ବେଗେ ଯାଅ ଦୁଇଭାଇ । ୨୩୫ । ମୁହିଁ ଯାଇଥିଲି ମୋତେ
ଅନ୍ନ ଥିଲେ ଦେଇ । ଖାଇଲେ ବହିଲେ ସେହି ଅନ୍ନ ନ ସରଇ ॥
ଏହିରୂପେ ସଚ୍ଚ୍ୟାନନ୍ଦ ବାଃ କହି ଦେଲେ । ଯିବା ବୋଲି ଦୁଇଭାଇ
କମର ବାନ୍ଧିଲେ । ୨୩୬ । ହସ୍ତୀ କମଳିନୀ ଛନ୍ତି ହଟ ଉଆଇଲେ ।
ସୂର୍ଯ୍ୟଙ୍କ ରାଉଣ ଦେଖି ବେଗେ ଆଜ୍ଞା ଦେଲେ । ୨୩୭ । ଅଭଣ୍ଡୀଗ୍ର
ହାଣଖଗ୍ କରି ବେଗେ ଯାଇଁ । ଦାଇ ମାଟି ଭାରୁ ବେଗେ ତତ-
ନାହ ହୋଇ । ୨୩୮ । ଝାଡିଲ ଗଗ୍ରେ ଯେବେ ରାଜବାର ଦାଇ ।
ଯାବେ ମାଣ୍ଡ ଛନ୍ତି କେହି ନ ପାରିବେ ଗଲି । ୨୩୯ । ଜଗନ୍ନାଥ
କହୁଛନ୍ତି ଶୁଣ ଜ୍ୟେଷ୍ଠଭାଇ । ଏତେବଡ଼ ଗଗ୍ରେ ମୁଁ ଗଲି ନ
ପାରଇ । ୨୪୦ । ବେଗ ବେଗ ହୋଇ ତୁମ୍ଭେ ଯାଉଅଛ ଧାଇଁ ।
ବୁଦ୍ଧି ଦଶୁନାହିଁ ଏବେ କିସ କରିବାଇଁ । ୨୪୧ । ଶୁଣି ନ ଶୁଣିଲା
ପରି ବଳଦେବ ଗଲେ । କମଳାଙ୍କ ସିଂହଦ୍ୱାରେ ପ୍ରବେଶ
ହୋଇଲେ । ୨୪୨ । ସିଂହଦ୍ୱାରେ ପ୍ରବେଶିଣ ଡାକିଲେକ ଯହୁଁ ।
ଡାକ ଶୁଣି ଦାସୀମାନେ ଅଇଲେକ ଛନ୍ତୁ ॥ କେଉଁଦାସୀ କହୁଅଛୁ
ଶୁଣ ଅଗୋ ସହି । ଏପରି କାଙ୍ଗାଳ ମୁଁ ଯେ କାହିଁ ଦେଖିନାହିଁ ॥
ଏହିପରି ମୋଟା ହୋଇ ଗୋଟାଏକ ଥିଲା । ଅମୃତାଭୁଗ୍ରଣୀଙ୍କି ସେ
ସଉଡ଼ାଇ ଦେଲା । ୨୪୩ । ଏହିରୂପେ ଦାସୀମାନେ ତୁହାତୁହି
ହେଲେ । ଦେକରେ ହାଇ ଦେଇଣ ଦାଣ୍ଡରେ ଛାଡିଲେ । ୨୪୪ ।
ବଳରାମ ପ୍ରଭୁ ଛନ୍ତି ଲେଉଟି ଅଇଲେ । ଜଗନ୍ନାଥ ଠାକୁରଙ୍କୁ
ବାଟରେ ଭେଟିଲେ । ୨୪୫ । ବଳରାମ କହୁଛନ୍ତି ଶୁଣ ରେ କହ୍ନାଇ ।
ଦାସୀମାନେ ଅସି ମୋତେ ଦେଲେ ସଉଡ଼ାଇ । ୨୪୬ । ଜଗନ୍ନାଥ
କହୁଛନ୍ତି କି ବୁଦ୍ଧି କରିବା । କେମନ୍ତ ପ୍ରକାରେ ଅମ୍ଭେ ଜୀବନ

ଧରିବା ।୩୪୮। ଆଉ ଥରେ ଚାଲ ବୁଲିଆସି ଫେରିଯିବା । ଦଣ୍ଡ
କରିଣ ଅନ୍ନ ଦାସୀଙ୍କି ମାଗିବା । ୩୪୯ । ବଳରାମ କହୁଛନ୍ତି ପଛେ
ଅମ୍ଭେ ଥିବୁଁ । ଆଗରେ ଥାଇଣ ଅନ୍ନ ତୁମ୍ଭେ ଯେ ମାଗିବୁ । ୩୫୦ ।
ଏତେ କହି ସିଂହଦ୍ୱାରେ ପ୍ରଭୁ ଦଣ୍ଡେ କଲେ । ମନ୍ଦିରର ଶୋଭା
ଦେଖି ଆଶ୍ଚର୍ଯ୍ୟ ହୋଇଲେ ।୩୫୧। ବଳରାମ କହିଲେକ ଶୁଣରେ
କହ୍ନାଇ । ପଞ୍ଚମସ୍ୱରରେ ଅସି ବେଦ ପଢ଼ ତୁମ୍ଭେ । ୩୫୨ । ଜଗନ୍ନାଥ
ପ୍ରଭୁ ଯହୁଁ ଏମନ୍ତ ଶୁଣିଲେ । ଓଁକାର ଶବଦ କରି ବେଦଧ୍ୱନି
କଲେ ।୩୫୩। ଋକ ଶାମ ଯଜୁ ଅଥର୍ବ ଯେ ଚାରିବେଦ । ବ୍ରହ୍ମାଣ୍ଡ
ପରି ଉଠିଲା ଗହଗହ ଶବ୍ଦ ।୩୫୪। ପଲଙ୍କ ଉପରେ ଯେ କମଳା
ଶୋଇଥିଲେ । ଭସ୍ତରିଲ ଭସ୍ତରିଲ ବୋଲିଣ ବୋଇଲେ ।୩୫୫।
କୋଟି କୋଟି ଜନ୍ମର ପାତକ ହେଲା କ୍ଷୟ । ମୋ ଧୂରେ ଦଣ୍ଡ
କଲେ ପ୍ରଭୁ ଦେବରାୟ ।୩୫୬। ପଚାରି ପଚାରି ଦାସୀ ପଚାର ଲୋ
ଯାଇଁ । କିସ ମାଗୁଛନ୍ତି ସେ ବ୍ରାହ୍ମଣ ଦୁଇଭାଇ । ୩୫୭ । ଧାଇଁ
ଯାଇଁ ମୁହମୁଲୀ ଭାଙ୍କୁ ପଚାରିଲେ । କି ମାଗୁଛ ପଣ୍ଡାମାନେ କହ
ତୁମ୍ଭେ ଭଲେ । ୩୫୮ । ଜଗନ୍ନାଥ କହୁଛନ୍ତି ଦାସୀ ମୁଖ ଚାହିଁ ।
ଅନ୍ନ ମୁଣ୍ଡାଏକ ତୁମ୍ଭେ ପାରିବ କି ଦେଇ । ୩୫୯ । ଏମନ୍ତ ଶୁଣିଣ
ଦାସୀମାନେ ଉଭଗଲେ । ଲକ୍ଷ୍ମୀଠାକୁରାଣୀ ଅଗେ ବେଗେ ସେ
ବୋଇଲେ । ୩୬୦ । ଦାସୀଙ୍କ ମୁଖରୁ ଯେ ଏମନ୍ତ ବାକ୍ୟ ଶୁଣି ।
ମନେ ବିଚାର କରନ୍ତି ଲକ୍ଷ୍ମୀଠାକୁରାଣୀ । ୩୬୧ । ଏକଥା ଅଭିଜ୍ଞ
ଅଛି ଚଣ୍ଡାଳୁଣୀ ମୁହିଁ । ଏବେ ଦାସୀମାନେ ଲୋ ପଚାର ବେଗେ
ଯାଇଁ । ୩୬୨ । ବ୍ରାହ୍ମଣ ହୋଇ ମୋ ଘରେ କିରୂପେ ଭୁଞ୍ଜିବେ ।
ଚଣ୍ଡାଳୁଣୀ ଅପବାଦ ଜଗତେ ଘାଟିବେ । ୩୬୩ । ଏ ମୋହର
ଦ୍ରବ୍ୟ ଭାଙ୍କୁ ହୁଇଁ ନ ଯୋଗାଇ । ଜାଣୁ ଜାଣୁ କେମନ୍ତ ପ୍ରକାରେ
ମୁଁ ଦେବଇଁ । ୩୬୪ । ଠାକୁରାଣୀ ସମୀପରୁ ଦାସୀମାନେ ଗଲେ ।
ବ୍ରାହ୍ମଣଙ୍କ ଅଗ୍ରେ ଯାଇ ଏ ସବୁ କହିଲେ ।୩୬୫। ଦାସୀଙ୍କ ମୁଖରୁ
ଯେ ଏମନ୍ତ ବାକ୍ୟ ଶୁଣି । କ୍ଷୁଧାତୁର ହୋଇ ଯେ କହନ୍ତି ହଳପାଣି ॥

।୬୬। ନୂଅହାଣ୍ଡି ନୂଅସଞ୍ଜା ଦେଇ ତୁ ପାରୁ । ଏମନ୍ତ ହୋଇଲେ ଆମ୍ଭେମାନେ ଯେ ଖାଇବୁଁ ।୬୭। ଦାସୀମାନେ କହନ୍ତି ଲକ୍ଷ୍ମୀଙ୍କ ଆଗେ ଯାଇଁ । ହାତେ ରନ୍ଧ ଭୋଜନ କରିବେ ତୁଲଇଲ ।୬୮। ଏହା ଶୁଣି ମହାଲକ୍ଷ୍ମୀ ସନ୍ତୋଷ ହୋଇଲେ । ଦାସୀଙ୍କ ହସ୍ତରେ ହାଣ୍ଡି ବଣଗୋଟା ଦେଲେ ।୬୯। ଗୃହିଲ ପୋଟିଏ ନେଇ ଛାମୁରେ ରଖିଲେ । ଲେଉଟିଅ ଶାଗ ନେଇ ଯୂଡାଏକ ଦେଲେ ।୭୦। ଆଳୁ ସାରୁ କଦଳୀ ଯେ ବଣ ନେଇ ଦେଲେ । ଦୁଧ ଦହି ଛେନା ଯେ ଶକର୍ ଆଣି ଦେଲେ ।୭୧। ଏବେ ଯେତେ ଇଚ୍ଛା ତେତେ ରନ୍ଧ ହୋ ବୋଇଲେ । ସ୍ୱହେ ମହାଲକ୍ଷ୍ମୀ ଥାଇ ବଶ୍ୱର ଯେ କଲେ ।୭୨। ବ୍ରହ୍ମଣ ଘୁଞ୍ଚିବେ ଯେବେ ଏହୁ ତୁଲଇ । ନାରୀଙ୍କି ପୁରୁଷ ଆଉ ଲୋଡବେ କିପାଇଁ ।୭୩। ଲକ୍ଷ୍ମୀଦେବୀ କାଷ୍ଠ ଖଣ୍ଡେ ହସ୍ତରେ ଘେନିଲେ । ଅଗ୍ନିର ସ୍ତମ୍ଭନ ମନ୍ତ୍ର ଦେବୀ ପାଠ କଲେ ।୭୪। କଦାପି ଅଗ୍ନି ଦେବତା ତେଜ ନ ହୋଇବ । ହାଣ୍ଡି ନ ଛାଡିବ ଆଉ ପାଣି ନ ଛାଡିବ ।୭୫। ଯେଲେ କାଷ୍ଠ ଜଳିଥିବ ଭସ୍ମ ହୋଇଯିବ । ଚୁଲ୍ଲି କରଣ ଛୁଇଁ ଧୂଆଁ ହେଉଥିବ ।୭୬। ଏମନ୍ତ ବୋଲିଣ ଯେ କମଳା ଆଜ୍ଞା ଦେଲେ । ସେହି ପ୍ରକାରରେ ଅଗ୍ନିଦେବତା ଯେ କଲେ ।୭୭। ସବୁକାଷ୍ଠଯାକ ଛଇଁ ଅଙ୍ଗାର ହୋଇଲା । ତେବେ ଚୁଲା ବସ୍ତୁରେ ପାଣି ନ ଛାଡିଲା ।୭୮। ହସ୍ତୀ କମଳନୀ ଯେଣୁ ହିଟ ଉଆଇଲ । ହାଣ୍ଡି ଉଲେ ଚଲା ଯେ ଟିକିଏ ନ ପଡିଲା ।୭୯। ସୁଗନ୍ଧ ଚାଉଳ ଦେବୀ ଦେଲେ ପଠାଇ । ଦାସୀମାନେ କହୁଛନ୍ତି ବ୍ରାହ୍ମଣଙ୍କୁ କହିଁ ।୮୦। ପାକସିଦ୍ଧ ହେଲା କି ନ ହେଲା ହେ ଗୋସାଇଁ । ଚାଉଳ ଲଗାଇ ସ୍ନାନ କରି ବେଗେ ଯାଇଁ ।୮୧। ଜଗନ୍ନାଥ କହନ୍ତି ପାଣିଚ ନ ଛାଡିଲା । କି ପାକ କରିବୁଁ ବେଳ ଉଚ୍ଛୁର ହୋଇଲା ।୮୨। ବଳଭଦ୍ର କହୁଛନ୍ତି ଶୁଣରେ କହାଇ । ଅନ୍ନ ହୋଇଲା କି ନାହିଁ କହ ବେଗେ ଭାଇ ।୮୩। ଜଗନ୍ନାଥ

କହୁଛନ୍ତି ଶୁଣ ଅହେ ଭାଇ । ଅନ୍ନ କି ହୋଇବ ହାଦେ ପାଣି ଛାଡୁ
ନାହିଁ ।୩୮୬। ବଳରାମ କହୁଛନ୍ତି ରେ ଅଧୂଅମୁହାଁ । ରାନ୍ଧି ନ ଜାଣି
ତୁ ହୋଇଅଛୁ ରାନ୍ଧୁଣିଆ ।୩୮୭। ତୁହି ଅଡ଼ ହୁଅ ମୁହିଁ ରାନ୍ଧୁଅଛୁ
ଯାଇଁ । ଅନ୍ନ ରାନ୍ଧିବାକୁ ଗଲେ ବ୍ରାହ୍ମଣ ଗୋସାଇଁ । ୩୮୮ । ଫୁଲି
ଫୁଲି ବଳରାମ ବିରକ୍ତ ହୋଇଲେ । କାଠଖଣ୍ଡେ ଘେନିଣ ଯେ
ହାଣ୍ଡି ପିଟିଦେଲେ । କ୍ଷୁଧାରେ ଯେ ଦୁଇଭାଇ ଅଳୁଳ ହୋଇଲେ ।
କି ବୁଦ୍ଧି କରିବା ଜଗନ୍ନାଥଙ୍କୁ ବୋଇଲେ । ୩୮୯ । ଜଗନ୍ନାଥ
ବୋଲୁଛନ୍ତି ବୁଦ୍ଧି ଦିଶୁନାହିଁ । କ୍ଷୁଧାରେ ଅତୁର ଯେ ହେଉଛି
ମୋର ଦେହୀ ।୩୯୦। ବଳରାମ କହୁଛନ୍ତି ଶୁଣ ଜଗନ୍ନାଥ । ଜାଉ
ପଛେ ଯାଉ ଛାର ଘରେ ଖାଇବି ଭାତ । ୩୯୧ । ଯେବେ ଏହା
ଘରୁ ଭାତ ଆମ୍ଭଙ୍କୁ ନ ଦେବ । ଆମ୍ଭ ଦୁଇଭାଇଙ୍କର ମରଣ
ହୋଇବ । ୩୯୨ । ଲେଉଟିଣ ଦାସୀ ଯାଇଁ ଲକ୍ଷ୍ମୀଙ୍କି କହିଲେ ।
ବ୍ରାହ୍ମଣଭାଇ ହାଣ୍ଡିଗୁଡ଼ି ଫୋପଡ଼ାଇ ଦେଲେ । ୩୯୩ । ଏହା ଶୁଣି
ମହାଲକ୍ଷ୍ମୀ ମନେ ଚିନ୍ତା କଲେ । କେଡ଼େ ଦୁଃଖ ଦୀନବନ୍ଧୁ ଦୁହେଁ
ଯେ ପାଇଲେ । ୩୯୪ । ସୁବର୍ଣ୍ଣର ଝାମ୍ପୁ ଗୋଟି ହସ୍ତରେ ଧଇଲେ ।
ରୋଷାଇଶାଳକୁ ଲକ୍ଷ୍ମୀ ଭଜେ ଦିଜେ କଲେ । ୩୯୫ ।.ପ୍ରଥମେ
ରାନ୍ଧିଲେ ମାଏ ବଇତା ଯେ ଅନ୍ନ । ମୁଗ ମଧୁ ଭୁରି ଖୀରି ନାନାଦି
ବ୍ୟଞ୍ଜନ । ୩୯୬ । ମରିଚ ଶାକର କଲେ କଦଳୀର ଭଜା । ଅଛି
ଯତ୍ନେ କଲେ ମାଏ ଭିଅଣ ଯେ ମଣ୍ଡା । ୩୯୭ । ଷାଠିଏ ପଉଟି ଯେ
ଭଞ୍ଜନ କଲେ ଯାଇଁ । ବଇଡ଼ାଭାଇ ମହିମା କଳନା ନ ଯାଇ ॥
ଦୁଧଫୁଲ କଲେ ମାଏ ଘୃତଫୁଲ କଲେ । ଘଇଫୁଲ କଲେ ଲକ୍ଷ୍ମୀ
ଅତି ଯତନରେ ।୩୯୮। ଯେତେ ଦ୍ରବ୍ୟ ରାନ୍ଧିଛନ୍ତି ବ୍ରାହ୍ମଣଙ୍କୁ ଭୁରି ।
ବଉଳ ମହୁର କଲେ ପକାଇଣ ଶାରି । ୩୯୯ । ସହସ୍ରେ ଅଠିକା
ରାନ୍ଧି ଦ୍ରବ୍ୟ ସମ୍ପାଦିଲେ । ଷାଠିଏ ନଉତି ପଣା ଲକ୍ଷ୍ମୀ ଯେ ଗୋ-
ଳିଲେ । ୪୦୦ । କର୍ପୂର ମରିଚ ଛେନାପଣା ସଜାଇଲେ । ଯେ
ଯାହି: ସ୍ଥାନରେ ଯତ୍ନେ ଲଗାଇଣ ଦେଲେ । ୪୦୧ । ଗନ୍ଧବାଣ

ପଇଡ଼ ସଙ୍ଗରେ ଛେନାପଣା । ଅଦା ମିଶା କରି ଯେ ନବାତ ଗଣ୍ଡ
ଛେନା । ୪୦୨ । ଦେ କହୁ ପାଉବନ୍ତି ଲକ୍ଷ୍ମୀଙ୍କ ପାକ ଗୁଣ । କ୍ଷଣକ
ମଧ୍ୟରେ ମାଏ ସଜାଡ଼ିଲେ ପୁଣ । ୪୦୩ । ସବୁଥିରୁ ଟିକ୍ରିଏ ଟିକ୍ରିଏ
ରଖିଥିଲେ । ଭୋଜନ ଶେଷରୁ ଯୋଗପିଠାଏ ଯୋଗାଇଲେ ।୪୦୪।
ଅଙ୍ଗମରଦନ ଦାସୀ କରି ଲେ ବହନ । ବ୍ରାହ୍ମଣ ବୋଇଣ ମନେ
ନ କରିବ ଭିନ ।୪୦୫। ବ୍ରାହ୍ମଣମାନଙ୍କର ମୁଁ ଅଟେ ଭକ୍ତ ଦାସୀ ।
ଶୁଣିଣ ଆନନ୍ଦେ ଚଳଗଲେ ସବୁ ଦାସୀ । ୪୦୬ । ଦାସୀମାନେ
କହୁଛନ୍ତି ଶୁଦେବ ଗୋସାଇଁ । ସ୍ନାନ କରିବ ଯେ ଅଙ୍ଗ ମରଦନ
ହୋଇ । ୪୦୭ । ସୁବାସଜଳରେ ପ୍ରଭୁ ଦୁହେଁ ସ୍ନାନ କଲେ ।
ଅଙ୍ଗ ପୋଛିବାକୁ ଗାମୁଛାଏ ବେଗେ ଦେଲେ । ୪୦୮ ।
ପିନ୍ଧିବାକୁ ପୀତାମ୍ବରୀ ପାଟ ଅଣି ଦେଲେ । ସୁବେଶ ହୋଇଣ
ଦୁଇଭାଇ ଯେ ବସିଲେ । ୪୦୯ । ବଳରାମ କହୁଛନ୍ତି ଶୁଣ ରେ
କହ୍ନାଇ । ଏମନ୍ତ ପ୍ରକାରେ ମାନ୍ୟ କରେ କିସ ପାଇଁ । ୪୧୦ ।
ଏହା ଘରେ ପୁରୁଷର ଜଣେ ଦିଶୁନାହିଁ । ଶୂଳୀ ଦେବାପ୍ରାଏ ଏହି
କରିର ଦଣ୍ଡଇ । ୪୧୧ । ଚାଲ ଏବେ ପଳାଇଣ ଏହିଠାରୁ
ଯିବା । କ୍ଷଣକ ମଧ୍ୟରେ ଅଭ ପ୍ରାଣ ନ ପାଇବା । ୪୧୨ । ଜଗ-
ନ୍ନାଥ କହୁଛନ୍ତି ଜ୍ୟେଷ୍ଠଭାଇ ଶୁଣ । ଏ ଘରର କର୍ତ୍ତା ଅନ୍ନ
ହୋଇବ ଆପଣ । ୪୧୩ । ବଳରାମ କହୁଛନ୍ତି ଶୁଣ ରେ କହ୍ନାଇ ।
ଏମନ୍ତ କହିବାର ହେ ଉଚିତ ନୁହଇ । ୪୧୪ । ଗୃହ ପରିଷ୍କାର
ଦେଖି ସ୍ୱହସ୍ତରେ କଲେ । ଗନ୍ଧ ଯେ ଚନ୍ଦନ ମାଏ ଛଡ଼ା ପକା-
ଇଲେ । ୪୧୫ । ସୁବର୍ଣ୍ଣର ଥାଳୀ ସୁବର୍ଣ୍ଣର ଗିନା ଝରୀ । ହାତ-
ଧୁଆ ପାଦଧୁଆ ସୁସଜ୍ଜିତ କରି । ୪୧୬ । ମଣୋହି କରିବା ବିଧି
ଯେମନ୍ତ ଭିଆଣ । ସୁବର୍ଣ୍ଣର ପିଠ ଛଟି କଲେକ ନିର୍ମାଣ । ୪୧୭ ।
ମହାଲକ୍ଷ୍ମୀ କହୁଛନ୍ତି ଦାସୀ ମୁଖ ଚାହିଁ । ବେଗ କରି ପ୍ରଭୁଙ୍କୁ ଲେ
ଘେଇ ଅସ ଯାଇଁ । ୪୧୮ । ଏହା ଶୁଣି ଦାସୀମାନେ ବେଗେ
ଚଳଗଲେ । ବ୍ରାହ୍ମଣଙ୍କ ପାଖେ ଯାଇ ପ୍ରବେଶ ହୋଇଲେ ।୪୧୯।

ଦନସ୍ତରେ କହୁଛନ୍ତି ବ୍ରାହ୍ମଣ ଗୋସାଇଁ । ଭୋଜନ କରିବ ସ୍ଥଳ
ସ୍ଥାନ ଅଛୁ ହୋଇ ।୪୨୦। ବଳରାମ କହୁଛନ୍ତି ଶୁଣ ରେ
ଭାଇ । ନାରୀଏ ଅଛନ୍ତି ପୁରୁଷଙ୍କ ବେଦ୍ଧ ନାହିଁ ।୪୨୧। ଉତ-
ରକୁ ଯିବା ଆମ୍ଭ ଉଚିତ ନୁହଇ । ପଞ୍ଚ ଦୁଇଗଣ୍ଡା ତୁମ୍ଭେ ପାଣ
ବେଗେ ଯାଇଁ ।୪୨୨। ଜଗନ୍ନାଥ କହୁଛନ୍ତି ଶୁଣ ଭାଇ ତୁମ୍ଭେ ।
ଏ ଘରର କର୍ତ୍ତା ଅଟ ହୋଇବା ଯେ ଅମ୍ଭେ ।୪୨୩। ତୁମ୍ଭେ
କପାଁ ଭୟ କରୁଅଛ ଜ୍ୟେଷ୍ଠଭାଇ । ବାଟ ଦେଉଅଛୁ ଅମ୍ଭେ
ଛାଡିବା କପାଇ ।୪୨୪। କହନ୍ତେ ବଳରାମ ଯେ ସେଠାରୁ ନ
ଉଠନ୍ତି । ହସ୍ତ ଧରି ଘେନିଗଲେ କମଳାଙ୍କ ପତି ।୪୨୫। ଠାବ
ସ୍ଥାନରେ ଯେ ବଳରାମ ନ ବସନ୍ତି । ହସ୍ତ ଧରି ବସାଇଲେ ଦେବ
ଶିରୀପତି ।୪୨୬। କମଳନା କହୁଛନ୍ତି ତୁଳସୀ ବ୍ରାହ୍ମଣୀ । ଦେବ-
ଗୁରୁ ମୋର ଯେ ଅଟନ୍ତି ହଳପାଣି ।୪୨୭। ତାହାଙ୍କୁ କେମନ୍ତେ
ଅନ୍ନ ମୁହିଁ ଦେବି ନେଇ । ଉତରେ ଥାଇଣ ମୁଁ ଯେ ଦେବଇଁ
ବଢାଇ ।୪୨୮। ବଡ ଥାନ ବୋଲି ଅଗ୍ରେ ପଲ୍ଲିରୁ ଯାଇଁ ।
କେବଣ ଠାବରେ ଅନ୍ନ ଥାଳ ଦେବି ମୁହିଁ ।୪୨୯। ଅନ୍ନଥାଳି
ଘେନି ବେଗେ ବ୍ରାହ୍ମଣୀ ଅଇଲା । ବଡ଼ ଥାନ କେଉଁ . ପଣ୍ଡା
ବୋଲିଣ ବୋଇଲା ।୪୩୦। ବଳରାମ ବୋଲୁଛନ୍ତି ହୋଇଲ
ଢ କାଣୀ । ବଡ଼ ଥାନ କିଏ ଛୋଟେ ନ ଦଶଇ ପୁଣି ।୪୩୧।
ଅମ୍ଭେ ବଡ ବୋଲିଣ ଯେ ବଳରାମ କହୁ । ବ୍ରାହ୍ମଣୀ ବୋଇଲା
କୋପ କଲ ଢ ଗୋସାଇଁ ।୪୩୨। ପ୍ରଥମ ଥାଳିର ଅନ୍ନ ବଳ-
ରାମେ ଦେଲା । ଉତରକୁ ଆଉ ଅନ୍ନ ଅଣିବାକୁ ଗଲା ।୪୩୩।
ଆଉ ଏକଥାଳୀ ଅନ୍ନ ଅଣିବା ବେଳକୁ । ଗୃହଗ୍ରାସରେ ଗାଇଲେ
ବଳରାମ ତାକୁ ।୪୩୪। ଅନ୍ନଥାଳୀ ଘେନିକରି ବ୍ରାହ୍ମଣୀ ଅଇଲା ।
ଏ ପଣ୍ଡାଙ୍କ ଅନ୍ନଥାଳୀ କିଏ ଘେନି ଗଲା ।୪୩୫। ବଳରାମ
ବୋଇଲେ କ୍ଷୁଧାର୍ତ୍ତ ହୋଇଥିଲୁଁ । ଅଗକରି ଗୃହଗ୍ରାସ ବେଗେ
ଗାଇ ଦେଲୁଁ ।୪୩୬। ହସିଣ ବ୍ରାହ୍ମଣୀ ଦୁଇଭାଇଙ୍କି ଅନାଇଁ ।

ଲୁଣ୍ଠମ ମାରିବା ପଣ୍ଡା ଦଗୁଛ ଗୋସାଇଁ । ୪୩୭ । ଶୁଣ ଭାରିଯା ବ
ତୁମ୍ଭ ଦୁହଙ୍କର ନାହିଁ । ଯେଣ୍ଟ ଲାଗି ବୁଲୁଅଛ ଦେଶ ଦେଶ
ହୋଇ । ୪୩୮ । ସହସ୍ରେ ଜାଙ୍ଗ କଦଳୀ ବଖାଇଲେ ନେଇ ।
ଷାଠିଏ ନଉତି ପଣା ବେଗେ ଦେଲେ ଯୋଇ ।୪୩୯। ଯେଉଁ ପରି
ପ୍ରଭୁଙ୍କର ମନକୁ ରୁଚଇ । ସେହିପରି କମଳିନୀ ଦଅନ୍ତି ପଠାଇ ।
ଭୋଜନ ଶେଷକୁ ଯେ ବୋଲନ୍ତି ବଳରାମ । ଲକ୍ଷ୍ମୀଙ୍କ ରନ୍ଧଣା
ପରି ଲାଗୁଛି ଭଅଣ । ୪୪୧ । ଜଗନ୍ନାଥ କହୁଛନ୍ତି ବଳରାମ ଭାଇ
ଲକ୍ଷ୍ମୀପରି ରାନ୍ଧଣାକୁ ପାଇବା ଅବା କାହିଁ । ୪୪୨ । ଲକ୍ଷ୍ମୀଙ୍କି
ଯେ ମାରି କରି ଦେଲ ଘଉଡାଇ । ଯେଣେ ଇଚ୍ଛା ତେଣେ ଗଲେ
ବାହାର ଘେ ହୋଇ । ୪୪୩ । ଏମନ୍ତ ସମୟେ ପୋଡ଼ପିଠା
ଦେଲେ ନେଇ । ଜଗନ୍ନାଥ କହୁଛନ୍ତି ବଳରାମ ଭଇ । ୪୪୪ ।
ମୋର ମନ କଥାକୁ ଯେ ଲକ୍ଷ୍ମୀ ଜାଣିଥାଇ । ଭୋଜନ ଶେଷରେ
ପୋଡ଼ପିଠାଏ ଦଅଇ । ୪୪୫ । ଭୋଜନ ସାରିଣ ପ୍ରଭୁ ଅଚମନ
କଲେ । କର୍ପୂର ତାମ୍ବୁଳ ଦୁଇ ଭାଇ ଯେ ଭୁଞ୍ଜିଲେ । ୪୪୬ ।
ବାହାର ମେଲାରେ ପ୍ରଭୁ ଚଳେଇ କଲେ ଯାଇଁ । ଗବାକ୍ଷ ଦ୍ୱାରରେ
ଲକ୍ଷ୍ମୀ ଅଛନ୍ତି ଅନାଇ । ୪୪୭ । ପଲ୍ଲର ପଲ୍ଲର ଦାସୀ ପଲ୍ଲର
ଲେ ଯାଇ । ଭକ୍ତ ହୋଇଅଛନ୍ତି ବ ପ୍ରଭୁ ଦୁଇ ଭାଇ । ୪୪୮ ।
ଏହା ଶୁଣି ଦାସୀମାନେ ବେଗେ ଉଇ ଗଲେ । ବ୍ରାହ୍ମଣଙ୍କ ନିକଟରେ
ପ୍ରବେଶ ହୋଇଲେ । ୪୪୯ । ଶୁଣ ଭାରିଯା ଅଛି ବ ନାହିଁ ତୁମ୍ଭ
ଘର । କେଉଁ ସ୍ୱର୍ଗ୍ୟ ବାଟ ବୁଝି ଶାସନ ତୁମ୍ଭର । ୪୫୦ ।
ଜଗନ୍ନାଥ କହୁଛନ୍ତି ଶୁଣ ଦାସୀ ତୁହି । ଦବାହ ହେବାକୁ ଦ୍ରବ୍ୟ
ଆମ୍ଭର ଯେ ନାହିଁ । ୪୫୧ । ଶୁଅବାଉ ଶାସନ ପାଇବୁଁ ଅମ୍ଭେ
କାହିଁ । ଲକ୍ଷ୍ମୀ ପ୍ରାପ୍ୟ ଭାରିଯାକୁ ଦେଲ ଘଉଡାଇ । ୪୫୨ ।
କପାଳ ମନ୍ଦ ଆମ୍ଭର ଭୁଲି ହୁଇଥାଇ । ଲକ୍ଷ୍ମୀ ଛାଡିବାରୁ ଅମ୍ଭେ
ଦୁଃଖ ଅଛୁଁ ପାଇ । ୪୫୩ । ଦାସୀଏ ବୋଇଲେ ପଣ୍ଡା ହୋଇଲ
ବ ବାଇ । ନାସ୍ତିକ ଛାଡିଲେ ଶ୍ରୀ ସଂ ଦରିଦ୍ର ହୋଇ । ୪୫୪ ।

ଯୋଗିକ ବୋଲନ୍ତି ଏକ ଭରତ ଗୋ ଶୁଣ । କେଉଁ ନାରୀଥିଲେ ହୋଏ ଐଶ୍ୱର୍ଯ୍ୟ ବର୍ଜନ ।୪୫୫। କେଉଁ ନାରୀ ଥିଲେ ଧନ ଉପାର୍ଜ ହୁଅଇ । କେଉଁ ନାରୀ ଥିଲେ ଦାସୀସେବକ ନ ମିଳଇ ॥ କେଉଁ ନାରୀ ଥିଲେ ଶାଢୀ ମୁକାବଳା ପାଇ । କେଉଁ ନାରୀ ଅଲକ୍ଷଣୀ ସ୍ୱାମୀକୁ ଖାଇ ।୪୫୬। ତୁମ୍ଭ ସାମନ୍ତାଣୀଙ୍କି ଗୋ ପଚାରିବ ଯାଇଁ । ଦାସୀ କହେ ବାତୁଳ କି ହୋଇଲ ଗୋ-ସାଇଁ ।୪୫୮। କ୍ଷୁଧା ଲାଗିଥିଲା ଖାଇ ଗାଉଣ ଯେ ଗଲ । ଅମ୍ଭ ସାମନ୍ତାଣୀଙ୍କି କେହୋ ପଚାରି ବୋଇଲ ।୪୫୯। ବଳରାମ ବୋଇଲେ ଏ ମୋର ପିଲା ଭାଇ । ତୁମ୍ଭ ସାମନ୍ତାଣୀ ଅଟେ ଜଣାଇବ ନାହିଁ ।୪୬୦। ଜଗନ୍ନାଥ କହୁଛନ୍ତି ଭଣ୍ଡ କାହିଁ ପାଇ । କିଛି ନ ଦିଅଇ ଅଟେ ବଳରାମ ଭାଇ ।୪୬୧। ଲକ୍ଷ୍ମୀଙ୍କର ସ୍ୱଭାବ ସିନା ଏହି ଯେ ଅଟଇ । ଏଠାରେ ଅପଣ ଭଣ୍ଡକର ଭିକ ପାଇଁ ।୪୬୨। ବଳରାମ ବୋଲୁଛନ୍ତି ବାବୁ ଚକ୍ରଧର । ତୁମ୍ଭେ ଯାଇ ହସ୍ତ ଧର ମହାଲକ୍ଷ୍ମୀଙ୍କର ।୪୬୩। ଅମ୍ଭେ ଦୋଷ କଲୁ ବୋଲି ତୁମ୍ଭେ କହ ଯାଇ । ଯହିଁ ଇଚ୍ଛା ତହିଁ ଥାଅ ଅଗୋ ମହାମାଈ ।୪୬୪। ଯେତେବେଳେ ବଳରାମ ଏମନ୍ତ କହିଲେ । ଭିତର ପୁରକୁ ପ୍ରଭୁ ଉଠେ ଚଳେ କଲେ ।୪୬୫। ଧୀରେ ଧୀରେ ଭିତରକୁ ଗଲେ ପୀତବାସ । ପ୍ରବେଶ ହୋଇଲେ ଯାଇ କମଳାଙ୍କ ପାଶ ।୪୬୬। ପାଞ୍ଚିତ୍ତଶ୍ରୀ ସେବକରି କମଳା ଅଇଲେ । ପ୍ରଭୁଙ୍କର ପାଦପଦ୍ମ ଧୋଇଣ ଯେ ଦେଲେ ।୪୬୭। ଅତି ଯତନରେ ପାଦପଦ୍ମ ଧୋଇ ଦେଲେ । ଯୋଡାଏ ପାଦଉଦକ ମସ୍ତକେ ବୋଳିଲେ ।୪୬୮। କିଛି ପାଦୋଦକ ଲକ୍ଷ୍ମୀ ଗର୍ଭକୁ ଖେପିଲେ । ପଞ୍ଚବର୍ତ୍ତି ଧୂପେ ପଦ୍ମ-ପାଦେ ପୂଜା କଲେ ।୪୬୯। ମହାଲକ୍ଷ୍ମୀ କହୁଛନ୍ତି ପ୍ରଭୁଙ୍କୁ ଅନାଇ । ଚଣ୍ଡାଳୁଣୀ ବୋଲି ମୋତେ ଦେଲ ଘଉଡ଼ାଇ ।୪୭୦। ଚଣ୍ଡାଳୁଣୀ ଘରେ ଏବେ ପଶିଲ ଗୋସାଇଁ । ଚଣ୍ଡାଳ ବିଟାଳ ହେଲ ଦୂର ଗୋଷ୍ଠି ଭାଇ । ୪୭୧ । ଅବ ଅବ ଜନ୍ମ ତୁମ୍ଭ ଅବ ତୁମ୍ଭ ମାତା

ଯୋଡ଼ି ମୁଗ ତୁମ୍ଭର ତୁମ୍ଭର ପିତା ଭ୍ରାତା । ୪୭୨ । ମହାଲକ୍ଷ୍ମୀ
ଏରୂପେ କହନ୍ତେ ସ୍ୱୀକାରିଲେ । କାଳୀପୁରାସ୍ତନ ଶୁଣି ଉତ୍ତର
ହେଲେ । ୪୭୩ । ମହାମାଈ ବୋଇଲେ ହେ ଶୁଣ ମୋ ବଚନ ।
ମୋତେ ତୁମ୍ଭର ଏ କାର୍ଯ୍ୟ କହ ହେ ବହନ । ୪୭୪ । ତତ୍କ୍ଷଣ
ଉତ୍ତରେ ବୋଇଲେ ଜଗନ୍ନାଥ । ଏବେ ମନୁମାନ ତେଜ ଜଗ-
ତର ମାତ । ୪୭୫ । ଦର୍ପା ଏତେ କଥା କହ ବାଇ ପ୍ରାପ୍ତ ହୋଇ ।
ଆମ୍ଭର ପ୍ରାର୍ଥନା ଏହୁ ସଙ୍ଗେ ଯିବାପାଇଁ । ୪୭୬ । ବଡ଼ ହେଲେ
ବଷ ହେଲ ଗରବ ଗଞ୍ଜିଲ । ଉଦଭଲେ ସବୁ ଯୁଗେ ଯଶକ
ରଖିଲ । ୪୭୭ । ତୁମ୍ଭେ ମାଆ କଲ ବୋଲି ଲକ୍ଷ୍ମୀଙ୍କି ବୋଇଲେ ।
ଆମ୍ଭ ଭିକ୍ଷା ମାଗିବାର ଜଗତେ ଜାଣିଲେ । ୪୭୮ । ତୁମ୍ଭ ଯଶ
ଲାଗି ଏବେ ଜଗତେ ରହିଲ । ଆମ୍ଭଙ୍କୁ ଅନ୍ନ ଦେବାର ଜଗତେ
ଶୁଭିଲା । ୪୭୯ । ଗୁରୁବାର ଦିନ ଯେ ଏ ପୁରାଣ ଶୁଣିବ । ଜନ୍ମ-
ଜନ୍ମାନ୍ତର ପାପ କ୍ଷୟ ଯେ ହୋଇବ । ୪୮୦ । ଲକ୍ଷ୍ମୀପୂଜା ଦିନ
ଏହା ଯେ ନାରୀ ଗାଇବ । ଇହଜନ୍ମେ ପରତ୍ରେ ବୈକୁଣ୍ଠକୁ ଯିବ ॥
ଯେବେ ଏହା ନାରୀଙ୍କି ବେ ମୁଖେ ଶୁଣାଇବ । ତାହାର ସୁକ୍ତ
ପାପ ବେ ମୁଖେ କହିବ । ୪୮୧ । ଏତେ କହି ଗୋବିନ୍ଦ ଧଇଲେ
ଲକ୍ଷ୍ମୀହସ୍ତ । ଜଗନ୍ନାଥ ବୋଇଲେ ତୁମ୍ଭେ କର ସତ୍ୟ । ୪୮୨ ।
ଚଣ୍ଡାଳୁଁ ବ୍ରାହ୍ମଣଯାଏ ଗ୍ରାଆଖୋଇ ହେବେ । ସମସ୍ତେ ଖାଇଣ ହସ୍ତ
ଜଳେ ନ ଧୋଇବେ । ୪୮୩ । ହାତହସ୍ତୁଁ ବ୍ରାହ୍ମଣ ଯେ ଛଡ଼ାଇ
ଖାଇବେ । ବ୍ରାହ୍ମଣ ଖାଇ ହସ୍ତକୁ ମୁଣ୍ଡରେ ପୋଛୁବେ । ୪୮୪ ।
ଅନ୍ନ ଖାଇ ସର୍ବେ ମୁଣ୍ଡେ ପୋଛୁଥିବେ ହସ୍ତ । ତେବେ ବଡ଼ଦେଉ-
ଳକୁ ଯିବ ଜଗନ୍ନାଥ । ୪୮୫ । ହେଉ ହେଉ ବୋଲି ଆଜ୍ଞା ଦେଲେ
ମହାବାହୁ । ଯୁଗେ ଯୁଗେ ଲକ୍ଷ୍ମୀ ମୋ ତୁମ୍ଭର ଯଶ ରହୁ । ୪୮୬ ।
ଲକ୍ଷ୍ମୀଙ୍କର ହସ୍ତ ଧରି ଜଗନ୍ନାଥ ନେଲେ । ବଡ଼ଦେଉଳକୁ ପ୍ରଭୁ
ଦତେ କରି ଗଲେ । ୪୮୮ । ଲକ୍ଷେ ଇନ୍ଦ୍ରଦ୍ୟୁମ୍ନ ଯେ ଛାମୁରେ
ଚଳଇ । ଦେଉଳକୁ ଦତେ କଲେ ବ୍ରାହ୍ମଣ ବୋଷାଇ । ୪୮୯ ।

ଇନ୍ଦ୍ରଡ଼ାକୁଛନ୍ତି ଦେବ ମହିମା ମହିମା । ବ୍ରହ୍ମା ଡାକୁଛନ୍ତି ଦେବ
ଗୁହାରି ଶୁଣିମା । ୪୯୦ । ବରୁଣ କୁବେର ଯେ ହସ୍ତରେ ବେତ
ଧରି । ନୃତ୍ୟ କରୁଥିଲେ ଛନ୍ଦିଁ ସ୍ୱର୍ଗ ଅପସରୀ । ୪୯୧ । ରମ୍ଭା ଯେ
ମେନକା ଆଦି ଆଉ ଚିତ୍ରରେଖା । ତୁଲସୀ ମାଳତୀ ଆଉ ଅନ୍ୟାନ୍ୟ
ରସିକା । ୪୯୨ । ରମ୍ଭଲା ଯେ ଚିତ୍ରରେଖା ଅବର ସୁଶୀଳା ।
ନୃତ୍ୟ ଅରମ୍ଭନ୍ତି ଅଷ୍ଟକନ୍ୟା ଯେ ଅବଳା । ୪୯୩ । ବଳରାମ କହ-
ଛନ୍ତି ଶୁଣରେ କହ୍ନାଇ । ଘରକୁ ଘରଣୀ ସିନା ସୁନ୍ଦର ଦିଶଇ ॥
ଯେତେବେଳେ ବାଣ୍ଡେ ଯାଉଥିଲୁଁ ଦୁଇଭାଇ । ଶ୍ରେୟ ଗଣ୍ଡ
ବୋଲି ଦେଉଥିଲେ ଘଉଡ଼ାଇ । ୪୯୪ । ବଳରାମ କହୁଛନ୍ତି
ଜଗନ୍ନାଥ ଭାଇ । ଲକ୍ଷ୍ମୀ ସେ ଏଡ଼େକ ଜଣେ ବୋଲି ଜାଣିଲଇଁ ॥
ଲକ୍ଷ୍ମୀଦେବୀ ଦଣ୍ଡ କଲେ ଲକ୍ଷ୍ମୀ ଦେଉଳକୁ । ଦୁଇଭାଇ ଦଣ୍ଡ
କଲେ ବଡ଼ଦେଉଳକୁ । ୪୯୬ । ଦାସୀ ପରିବାରୀ ଯେ ପରିଛା
ଯେତେ ଥିଲେ । ଲକ୍ଷ୍ମୀ ଅଇଲାକୁ ସେ ଯେ ସମସ୍ତେ ଅଇଲେ ।୪୯୮।
ଲକ୍ଷ୍ମୀଙ୍କି ପାଇଣ ଦେବ ଗୋବିନ୍ଦ ଆନନ୍ଦ । ସଂସାରରେ ସେହୁ ମଜ
କଲେକ ମୁକୁନ୍ଦ ।୪୯୯। ଏ ପୁରାଣ ଶୁଣିଲେ ଯେ ସର୍ବସିଦ୍ଧ ହୁଏ ।
ହରି ହରି ବୋଲନ୍ତେ ପାତକ କ୍ଷୟ ଯାଏ । ୫୦୦ । ଏ ପୁରାଣ
ଯେଉଁ ମାନେ ପଢ଼ନ୍ତି ଶୁଣନ୍ତି । ଲକ୍ଷକୋଟି ଗୋ-ଦାନର ଫଳ ସେ
ଲଭନ୍ତି । ୫୦୧ । ଏ ପୁରାଣ ଅଟଇ ଯେ ମୁକତିର ପଥ । ଏହା
ଫଳ କଥନରେ କେ ହେବ ସମର୍ଥ । ୫୦୨ । ଲକ୍ଷ୍ମୀଙ୍କ ପୁରାଣ ଏହି
ସମ୍ପୂର୍ଣ୍ଣ ହୋଇଲା । ଭାବେ ବଳରାମ ଦାସ ଗୀତରେ କହିଲା ।୫୦୩।

---

ସମାପ୍ତ ।

